[୧] ପୁନର୍ଭୂର୍ଦିଧିଷୂରୂଢାଦ୍ୱି [୨] ସ୍ତସ୍ୟା ଦିଧିଷୁଃ ପତିଃ ।
[୩] ସ ତୁ ଦ୍ୱିଜୋଽଗ୍ରେ ଦିଧିଷୂଃ ସୈବ ଯସ୍ୟ କୁଟୁମ୍ବିନୀ ॥
[୪] କାନୀନଃ କନ୍ୟକାଜାତଃ ସୁତୋ [୫] ଽଥ ଶୁଭଗାସୁତଃ ।
ସୌଭାଗିନେୟଃ ସ୍ୟାତ୍ [୬] ପାରସ୍ତ୍ରୈଣେୟସ୍ତୁ ପରସ୍ତ୍ରିୟାଃ ॥
[୭] ପୈତୃଷ୍ୱସେୟଃ ସ୍ୟାତ୍ ପୈତୃଷ୍ୱସ୍ରୀୟଶ୍ଚ ପିତୃଷ୍ୱସୁଃ ।
ସୁତୋ [୮] ମାତୃଷ୍ୱସୁଶ୍ଚୈବ [୯] ବୈମାତ୍ରେୟୋ ବିମାତୃଜଃ ॥
[୧୦] ଅଥ ବାନ୍ଧକିନେୟଃ ସ୍ୟାଦ୍ବନ୍ଧୁଲଶ୍ଚାଽସତୀସୁତଃ ।
କୌଲଟେୟଃ କୌଲଟେରେ [୧୧] ଭିକ୍ଷୁକୀ ତୁ ସତୀ ଯଦି ॥
ତଦା କୌଲଟିନେୟୋଽସ୍ୟାଃ କୌଲଟେୟୋଽପି ଚାତ୍ମଜଃ ।
[୧୨] ଆତ୍ମଜସ୍ତନୟଃ ସୂନୁଃ ସୁତଃ ପୁତ୍ରଃ [୧୩] ସ୍ତ୍ରିୟାଂ ତ୍ୱମୀ ॥
ଆହୁର୍ଦୁହିତରଂ ସର୍ବେ [୧୪] ଽପତ୍ୟଂ ତୋକଂ ତୟୋଃ ସମେ ।

---

୧ । ପୁନର୍ଭୂ । ଦିଧିଷୂ ଏ ଦୁଇନାମ ଦୁଇଥର ବିବାହିତା ସ୍ତ୍ରୀର ।
୨ । ଦୁଇଥର ବିବାହିତା ସ୍ତ୍ରୀର ସ୍ୱାମିକି ଦିଧିଷୁ କହି ।
୩ । ଦ୍ୱିଜବିବାହିତା ସ୍ତ୍ରୀ ଯାହାର ଗୃହିଣୀ ତାହାକୁ ଅଗ୍ରେଦିଧିଷୁ କହି ।
୪ । କାନୀନ । କନ୍ୟକାଜାତ ଏ ଦୁଇନାମ ଅବିବାହିତା କନ୍ୟାଗର୍ଭଜାତ ପୁତ୍ରର ।
୫ । ଶୁଭଗାସୁତ । ସୌଭାଗିନେୟ ଏ ଦୁଇନାମ ଶୁଭଗାସ୍ତ୍ରୀପୁତ୍ରର ।
୬ । ପରସ୍ତ୍ରୀଜାତ ପୁତ୍ରକୁ ପାରସ୍ତ୍ରୈଣେୟ କହି ।
୭ । ପୈତୃଷ୍ୱସେୟ । ପୈତୃଷ୍ୱସ୍ରୀୟ ଏ ଦୁଇ ନାମ ପିତାଭଗିନୀ ପୁତ୍ରର ।
୮ । ମାତୃଷ୍ୱସେୟ । ମାତୃଷ୍ୱସ୍ରୀୟ ଏ ଦୁଇନାମ ମାତାଭଗିନୀପୁତ୍ରର ।
୯ । ବୈମାତ୍ରେୟ । ବୈମାତୃଜ ଏ ଦୁଇନାମ ବୈମାତ୍ରେୟ ଭାଇର ।
୧୦ । ବାନ୍ଧକିନେୟ । ବନ୍ଧୁଳ । ଅସତୀସୁତ । କୌଲଟେୟ । କୌଲଟେର ଏ ପାଞ୍ଚନାମ ଅସତୀପୁତ୍ରର ।
୧୧ । କୌଲଟିନେୟ । କୌଲଟେୟ ଏ ଦୁଇନାମ ସତୀଭିକ୍ଷୁକୀ ସ୍ତ୍ରୀ ପୁତ୍ରର ।
୧୨ । ଆତ୍ମଜ । ତନୟ । ସୂନୁ । ସୁତ । ପୁତ୍ର ଏ ପାଞ୍ଚନାମ ପୁତ୍ରର ।
୧୩ । ଦୁହିତୃ । ତନୟା । ସୂନୁ । ସୂନୁ । ସୁତା । ପୁତ୍ରୀ । ପୁତ୍ରିକା ଏ ସାତନାମ କନ୍ୟାର ।
୧୪ । ଅପତ୍ୟ । ତୋକ ଏ ଦୁଇନାମ ପୁତ୍ର କନ୍ୟାଙ୍କୁ କହି ।

[୧] ସ୍ୱଜାତେ ତ୍ୱୌରସୌରସ୍ୟୌ [୨] ତାତସ୍ତୁ ଜନକଃ ପିତା ॥
[୩] ଜନୟିତ୍ରୀ ପ୍ରସୂର୍ମାତା ଜନନୀ [୪] ଭଗିନୀ ସ୍ୱସା ।
[୫] ନନାନ୍ଦା ତୁ ସ୍ୱସା ପତ୍ୟୁଃ [୬] ନପ୍ତ୍ରୀ ପୌତ୍ରୀ ସୁତାତ୍ମଜା ॥
[୭] ଭାର୍ଯ୍ୟାସ୍ତୁ ଭ୍ରାତୃବର୍ଗସ୍ୟ ଯାତରଃ ସ୍ୟୁଃ ପରସ୍ପରଂ ।
[୮] ପ୍ରଜାବତୀ ଭ୍ରାତୃଜାୟା [୯] ମାତୁଲାନୀ ତୁ ମାତୁଲୀ ॥
[୧୦] ପତିପତ୍ନ୍ୟୋଃ ପ୍ରସୂଃ ଶ୍ୱଶ୍ରୂଃ [୧୧] ଶ୍ୱଶୁରସ୍ତୁ ପିତା ତୟୋଃ ।
[୧୨] ପିତୁର୍ଭ୍ରାତା ପିତୃବ୍ୟଃ ସ୍ୟା [୧୩] ମାତୁର୍ଭ୍ରାତା ତୁ ମାତୁଲଃ ॥
[୧୪] ଶ୍ୟାଲାଃ ସ୍ୟୁର୍ଭ୍ରାତରଃ ପତ୍ନ୍ୟାଃ [୧୫] ସ୍ୱାମିନୋ ଦେବୃଦେବରୌ
[୧୬] ସ୍ୱସ୍ରୀୟୋ ଭାଗିନେୟଃ ସ୍ୟା [୧୭] ଜାମାତା ଦୁହିତୁଃ ପତିଃ ॥

---

୧ । ଔରସ । ଔରସ୍ୟ ଏ ଦୁଇନାମ ଔରସ ପୁତ୍ରର ।
୨ । ତାତ । ଜନକ । ପିତୃ ଏ ତିନିନାମ ପିତାର ।
୩ । ଜନୟିତ୍ରୀ । ପ୍ରସୂ । ମାତୃ । ଜନନୀ ଏ ଚାରିନାମ ମାତାର ।
୪ । ଭଗିନୀ । ସ୍ୱସୃ ଏ ଦୁଇନାମ ଭଉଣୀର ।
୫ । ପତିର ଭଗିନୀକି ନନାନ୍ଦୃ ( ନଣନ୍ଦ ) କହି ।
୬ । ନପ୍ତ୍ରୀ । ପୌତ୍ରୀ । ସୁତାତ୍ମଜା ଏ ତିନିନାମ ପୁତ୍ରର କନ୍ୟାକୁ କହି ।
୭ । ସମସ୍ତ ଭାଇଙ୍କର ସ୍ତ୍ରୀମାନଙ୍କର ପରସ୍ପର ନାମରୁ ଯାତୃ ( ଯା ) କହି ।
୮ । ପ୍ରଜାବତୀ । ଭ୍ରାତୃଜାୟା ଏ ଦୁଇନାମ ଭ୍ରାତାର ସ୍ତ୍ରୀର ।
୯ । ମାତୁଲାନୀ । ମାତୁଲୀ ଏ ଦୁଇନାମ ମାଇଁର ।
୧୦ । ପତି ପତ୍ନୀର ମାତାଙ୍କନାମ ଶ୍ୱଶ୍ରୂ କହି ।
୧୧ । ପତି ପତ୍ନୀ ପିତାଙ୍କୁ ଶ୍ୱଶୁର କହି ।
୧୨ । ପିତାର ଭ୍ରାତାଙ୍କୁ ପିତୃବ୍ୟ କହି ।
୧୩ । ମାତାର ଭ୍ରାତାଙ୍କୁ ମାତୁଳ କହିଁ ।
୧୪ । ପତ୍ନୀର ଭ୍ରାତାକୁ ଶାଳକ କହି ।
୧୫ । ଦେବୃ । ଦେବର ଏ ଦୁଇନାମ ସ୍ୱାମୀ ଭ୍ରାତାର । ( ଦିଅରର )
୧୬ । ସ୍ୱସ୍ରୀୟ । ଭାଗିନେୟ ଏ ଦୁଇନାମ ଭଣଜାର ।
୧୭ । କନ୍ୟାର ପତିକି ଜାମାତୃ ( ଜୋଇଁ ) କହି ।

[୧] ପିତାମହଃ ପିତୃପିତା [୨] ତତ୍ପିତା ପ୍ରପିତାମହଃ ।
[୩।୪] ମାତୁର୍ମାତାମହାଦ୍ୟେବଂ [୫] ସପିଣ୍ଡାସ୍ତୁ ସନାଭୟଃ ॥
[୬] ସମାନୋଦର୍ଯ୍ୟ ସୋଦର୍ଯ୍ୟ ସଗର୍ଭ୍ୟ ସହଜାଃ ସମାଃ ।
[୭] ସଗୋତ୍ର ବାନ୍ଧବ ଜ୍ଞାତି ବନ୍ଧୁ ସ୍ୱସ୍ୱଜନାଃ ସମାଃ ॥
[୮] ଜ୍ଞାତେୟଂ [୯] ବନ୍ଧୁତା ତେଷାଂ କ୍ରମାଦ୍ଭାବସମୂହୟୋଃ ।
[୧୦] ଧବଃ ପ୍ରିୟଃ ପତିର୍ଭର୍ତ୍ତା [୧୧] ଜାରସ୍ତୂପପତିଃ ସମୌ ॥
[୧୨] ଅମୃତେ ଜାରଜଃ କୁଣ୍ଡୋ [୧୩] ମୃତେ ଭର୍ତ୍ତରି ଗୋଲକଃ ।
[୧୪] ଭ୍ରାତ୍ରୀୟୋ ଭ୍ରାତୃଜୋ [୧୫] ଭ୍ରାତୃ ଭଗିନ୍ୟୌ ଭ୍ରାତରାବୁଭୌ ॥

---

୧ । ପିତାମହ । ପିତୃପିତୃ ଏ ଦୁଇନାମ ପିତାଙ୍କ ପିତାର ।
୨ । ପିତାମହର ପିତାଙ୍କ ନାମକୁ ପ୍ରପିତାମହ କହି ।
୩ । ମାତାର ପିତାଙ୍କ ନାମକୁ ମାତାମହ କହି ।
୪ । ମାତାମହଙ୍କର ପିତାଙ୍କ ନାମକୁ ପ୍ରମାତାମହ କହି ।
୫ । ସପିଣ୍ଡ । ସନାଭି ଏ ଦୁଇନାମ ସପ୍ତମ ପୁରୁଷାବଧି ଜ୍ଞାତିମାନଙ୍କର ।
୬ । ସମାନୋଦର୍ଯ୍ୟ । ସୋଦର୍ଯ୍ୟ । ସଗର୍ଭ୍ୟ । ସହଜ ଏ ଚାରିନାମ ସହୋଦରର ।
୭ । ସଗୋତ୍ର । ବାନ୍ଧବ । ଜ୍ଞାତି । ବନ୍ଧୁ । ସ୍ୱ । ସ୍ୱଜନ ଏ ଛନାମ ଜ୍ଞାତିର ।
୮ । ଜ୍ଞାତିଭାବର ନାମକୁ ଜ୍ଞାତେୟ କହି ।
୯ । ଜ୍ଞାତିଭାବ ଓ ଜ୍ଞାତି ସମୂହର ନାମକୁ ବନ୍ଧୁତା କହି ।
୧୦ । ଧବ । ପ୍ରିୟ । ପତି । ଭର୍ତ୍ତା ଏ ଚାରିନାମ ପତିର ।
୧୧ । ଜାର । ଉପପତି ଏ ଦୁଇନାମ ଉପପତିର ।
୧୨ । ସ୍ୱାମୀଥାଇ ଉପପତି ଦ୍ୱାରା ଜାତ ପୁତ୍ରକୁ କୁଣ୍ଡ କହି ।
୧୩ । ସ୍ୱାମି ନ ଥାଇ ଉପପତି ଜାତପୁତ୍ରକୁ ଗୋଲକ କହି ।
୧୪ । ଭ୍ରାତ୍ରୀୟ । ଭ୍ରାତୃଜ ଏ ଦୁଇନାମ ଭ୍ରାତୃପୁତ୍ରର [ପୁତୁରାର]
୧୫ । ଭ୍ରାତୃଭଗିନୀ । ଭ୍ରାତରୌ ଏ ଦୁଇନାମ ଭ୍ରାତା ଭଗିନୀ ଦୁହିଙ୍କର ।

[୧] ମାତାପିତରୌ ପିତରୌ ମାତର ପିତରୌ ଚ ତୌ ।
[୨] ଶ୍ୱଶ୍ରୂ ଶ୍ୱଶୁରୌ ଶ୍ୱଶୁରୌ [୩] ପୁତ୍ରୌ ପୁତ୍ରଶ୍ଚଦୁହିତା ॥
[୪] ଦମ୍ପତୀ ଜମ୍ପତୀ ଜାୟାପତୀ ଭାର୍ଯ୍ୟାପତୀ ଚ ତୌ ।
[୫] ଗର୍ଭାଶୟୋ ଜରାୟୁଃ ସ୍ୟାଦୁଲ୍ବଞ୍ଚ କଲଲୋଽସ୍ତ୍ରିୟାଂ ॥
[୬] ସୂତିମାସୋ ବୈଜନନୋ [୭] ଗର୍ଭୋ ଭ୍ରୂଣ ଇମୌ ସମୌ ।
[୮] ତୃତୀୟା ପ୍ରକୃତିଃ ଷଣ୍ଢଃ କ୍ଲୀବ ଷଣ୍ଢୋ ନପୁଂସକଂ ॥
[୯] ଶିଶୁତ୍ୱଂ ଶୈଶବଂ ବାଲ୍ୟଂ [୧୦] ତାରୁଣ୍ୟଂ ଯୌବନଂ ସମେ ।
[୧୧] ସ୍ୟାତ୍ ସ୍ଥାବିରଂ ତୁ ବୃଦ୍ଧତ୍ୱଂ [୧୨] ବୃଦ୍ଧସଂଘେଽପି ବାର୍ଦ୍ଧକଂ ॥
[୧୩] ପଳିତଂ ଜରସା ଶୌକ୍ଲ୍ୟଂ କେଶାଦୌ [୧୪] ବିସ୍ରସା ଜରା ।
[୧୫] ସ୍ୟାଦୁତ୍ତାନଶୟା ଡିମ୍ଭା ସ୍ତନପା ଚ ସ୍ତନନ୍ଧୟୀ ॥

---

୧ । ପିତରୌ । ମାତରପିତରୌ । ମାତାପିତରୌ ଏ ତିନିନାମ ମାତା ପିତା ଦୁହିଙ୍କର
୨ । ଶ୍ୱଶ୍ରୂଶ୍ୱଶୁରୌ । ଶ୍ୱଶୁରୌ ଏ ଦୁଇନାମ ଶାଶୁ ଶଶୁର ଦୁହିଙ୍କର ।
୩ । ପୁତ୍ର ଦୁହିତା ଦୁହିଙ୍କି ପୁତ୍ରୌ କହି ।
୪ । ଦମ୍ପତୀ । ଜମ୍ପତୀ । ଭାର୍ଯ୍ୟାପତୀ । ଜାୟାପତୀ ଏ ଚାରିନାମ ଭାର୍ଯ୍ୟାସ୍ୱାମୀ ଦୁହିଙ୍କର
୫ । ଗର୍ଭାଶୟ । ଜରାୟୁ । ଉଲ୍ବ । କଲଲ ଏ ଚାରିନାମ ଜରାୟୁ ନାଡୀର ।
୬ । ସୂତିମାସ । ବୈଜନନ ଏ ଦୁଇନାମ ଜନ୍ମମାସର ।
୭ । ଗର୍ଭ । ଭ୍ରୂଣ ଏ ଦୁଇନାମ ଗର୍ଭର ।
୮ । ତୃତୀୟାପ୍ରକୃତି । ଷଣ୍ଢ । କ୍ଲୀବ । ଷଣ୍ଢ । ନପୁଂସକ ଏ ପାଞ୍ଚନାମ ନପୁଂସକର ।
୯ । ଶିଶୁତ୍ୱ । ଶୈଶବ । ବାଲ୍ୟ ଏ ତିନିନାମ ବାଲ୍ୟାବସ୍ଥାର ।
୧୦ । ତାରୁଣ୍ୟ । ଯୌବନ ଏ ଦୁଇନାମ ଯୌବନାବସ୍ଥାର ।
୧୧ । ସ୍ଥାବିର । ବୃଦ୍ଧତ୍ୱ ଏ ଦୁଇନାମ ବୃଦ୍ଧାବସ୍ଥାର ।
୧୨ । ବୃଦ୍ଧସମୂହକୁ ବାର୍ଦ୍ଧକ୍ୟ କହି ।
୧୩ । ଜରାବସ୍ଥାଦ୍ୱାରା କେଶାଦିର ଶୁକ୍ଳତ୍ୱର ନାମକୁ ପଳିତ କହି ।
୧୪ । ବିସ୍ରସା । ଜରା ଏ ଦୁଇନାମ ଜରାର ।
୧୫ । ଉତ୍ତାନଶୟା । ଡିମ୍ଭା । ସ୍ତନପା । ସ୍ତନନ୍ଧୟୀ ଏ ଚାରିନାମ ଶୁଦ୍ରବାଳକର ।

[୧] ବାଲସ୍ତୁ ସ୍ୟାନ୍ମାଣବକଃ [୨] ବୟସ୍ଥସ୍ତରୁଣୋ ଯୁବା ।
[୩] ପ୍ରବୟାଃ ସ୍ଥବିରୋ ବୃଦ୍ଧୋ ଜୀନୋ ଜୀର୍ଣ୍ଣୋ ଜରନ୍ନପି ॥
[୪] ବର୍ଷୀୟାନ୍ ଦଶମୀ ଜ୍ୟାୟାନ୍ [୫] ପୂର୍ବଜସ୍ତ୍ୱଗ୍ରିୟୋଽଗ୍ରଜଃ ।
[୬] ଜଘନ୍ୟଜେ ସ୍ୟୁଃ କନିଷ୍ଠ ଯବୀୟୋଽବରଜାନୁଜାଃ ।
[୭] ଅମାଂସୋ ଦୁର୍ବଲଶ୍ଛାତୋ [୮] ବଲବାନ୍ମାଂସଲୋଽଂସଲଃ ।
[୯] ତୁନ୍ଦିଲସ୍ତୁନ୍ଦିବସ୍ତୁନ୍ଦୀ ବୃହତ୍କୁକ୍ଷିଃ ପିଚଣ୍ଡିଲଃ ॥
[୧୦] ଅବଟୀଟୋଽବନାଟଶ୍ଚାଽବଭ୍ରଟୋ ନତନାସିକେ ।
[୧୧] କେଶବଃ କେଶିକଃ କେଶୀ [୧୨] ବଲିନୋ ବଲିଭଃ ସମୌ
[୧୩] ବିକଲାଙ୍ଗସ୍ତୁ ପୋଗଣ୍ଡଃ [୧୪] ଖର୍ବୋ ହ୍ରସ୍ୱଶ୍ଚ ବାମନଃ ।
[୧୫] ଖରଣାଃ ସ୍ୟାତ୍ ଖରଣସୋ [୧୬] ବିଗ୍ରସ୍ତୁ ଗତନାସିକଃ ।

---

୧ । ବାଲ । ମାଣବକ ଏ ଦୁଇନାମ ଷୋଡ଼ଶବର୍ଷ ପର୍ଯ୍ୟନ୍ତ ବାଳକର ।
୨ । ବୟସ୍ଥ । ତରୁଣ । ଯୁବନ୍ ଏ ତିନିନାମ ଯୁବାର ।
୩ । ପ୍ରବୟସ୍ । ସ୍ଥବିର । ବୃଦ୍ଧ । ଜୀନ । ଜୀର୍ଣ୍ଣ । ଜରତ୍ ଏ ଛନାମ ବୃଦ୍ଧର ।
୪ । ବର୍ଷୀୟସ୍ । ଦଶମିନ୍ । ଜ୍ୟାୟସ୍ ଏତିନନାମ ଅତିଶୟ ବୃଦ୍ଧର ।
୫ । ପୂର୍ବଜ । ଅଗ୍ରିୟ । ଅଗ୍ରଜ ଏ ତିନିନାମ ଜ୍ୟେଷ୍ଠଭ୍ରାତାର ।
୬ । ଜଘନ୍ୟଜ । କନିଷ୍ଠ । ଯବୀୟସ୍ । ଅବରଜ । ଅନୁଜ ଏ ପାଞ୍ଚନାମ କନିଷ୍ଠଭ୍ରାତାର
୭ । ଅମାଂସ । ଦୁର୍ବଳ । ଛାତ ଏ ତିନିନାମ ଦୁର୍ବଳ ବ୍ୟକ୍ତିର ।
୮ । ବଳବତ୍ । ମାଂସଳ । ଅଂସଳ ଏ ତିନିନାମ ବଳବାନ୍ ବ୍ୟକ୍ତିର । ( ବ୍ୟକ୍ତିର
୯ । ତୁନ୍ଦିଳ । ତୁନ୍ଦିଭ । ତୁନ୍ଦିନ୍ । ବୃହତ୍କୁକ୍ଷି । ପିଚଣ୍ଡିଳ ଏ ପାଞ୍ଚନାମ ବଡ଼ଉଦରଯୁକ୍ତ
୧୦ । ଅବଟୀଟ । ଅବନାଟ । ଅବଭ୍ରଟ । ନତନାସିକ ଏ ଚାରିନାମ ନିମ୍ନନାସିକ ବ୍ୟକ୍ତିର
୧୧ । କେଶବ । କେଶିକ । କେଶିନ୍ ଏ ତିନିନାମ ପ୍ରଶସ୍ତ କେଶଯୁକ୍ତ ବ୍ୟକ୍ତିର ।
୧୨ । ବଲିନ । ବଲିଭ ଏ ଦୁଇନାମ ତ୍ରିବଳିଯୁକ୍ତ ବ୍ୟକ୍ତିର ।
୧୩ । ବିକଲାଙ୍ଗ । ପୋଗଣ୍ଡ ଏ ଦୁଇନାମ ସ୍ୱଭାବତଃ ଅଙ୍ଗହୀନ ବ୍ୟକ୍ତିର ।
୧୪ । ଖର୍ବ । ହ୍ରସ୍ୱ । ବାମନ ଏ ତିନିନାମ ବାମନ ପୁରୁଷର ।
୧୫ । ଖରଣସ୍ । ଖରଣସ ଏ ଦୁଇନାମ ଗଦାପରି ନାସିକାଯୁକ୍ତ ବ୍ୟକ୍ତିର ।
୧୬ । ବିଗ୍ର । ଗତନାସିକ ଏ ଦୁଇନାମ ନାକକଟା ପୁରୁଷର ।

[୧] ଖୁରଣାଃ ସ୍ୟାତ୍ ଖୁରଣସଃ [୨] ପ୍ରଜ୍ଞୁ ପ୍ରଗତଜାନୁକଃ ।
[୩] ଊର୍ଦ୍ଧ୍ୱଜ୍ଞୁରୂର୍ଦ୍ଧ୍ୱଜାନୁଃ ସ୍ୟାତ୍ [୪] ସଂଜ୍ଞୁଃ ସଂହତଜାନୁକଃ ॥
[୫] ସ୍ୟାଦେଡ଼େ ବଧିରଃ [୬] କୁବ୍ଜେ ଗଡୁଲଃ [୭] କୁକରେ କୁଣିଃ
[୮] ପୃଶ୍ନିରଳ୍ପତନୌ [୯] ଶ୍ରୋଣଃ ପଙ୍ଗୌ [୧୦] ମୁଣ୍ଡସ୍ତୁ ମୁଣ୍ଡିତେ
[୧୧] ବଳିରଃ କେକରେ [୧୨] ଖୋଡ଼େ ଖଞ୍ଜସ୍ତ୍ରିଷୁ ଜରାବସ୍ଥଃ ।
[୧୩] ଜଡୁଲଃ କାଳକଃ ପିପ୍ଳୁ [୧୪] ସ୍ତିଲକସ୍ତିଲକାଳକଃ ॥
[୧୫] ଅନାମୟଂ ସ୍ୟାଦାରୋଗ୍ୟଂ [୧୬] ଚିକିତ୍ସା ରୁକ୍ପ୍ରତିକ୍ରିୟା ।
[୧୭] ଭେଷଜୌଷଧଭୈଷଜ୍ୟାନ୍ୟଗଦୋ ଜାୟୁରିତ୍ୟପି ॥
[୧୮] ସ୍ତ୍ରୀ ରୁଗ୍ରୁଜା ଚୋପତାପ ରୋଗ ବ୍ୟାଧି ଗଦାମୟାଃ ।

---

୧ । ଖୁରଣସ୍ । ଖୁରଣସ ଏ ଦୁଇନାମ ଛେପଟା ନାସାଯୁକ୍ତ ବ୍ୟକ୍ତିର ।
୨ । ପ୍ରଜ୍ଞୁ । ପ୍ରଗତଜାନୁକ ଏ ଦୁଇନାମ ଭଗ୍ନଜାନୁ ବ୍ୟକ୍ତିର ।
୩ । ଊର୍ଦ୍ଧ୍ୱଜ୍ଞୁ । ଊର୍ଦ୍ଧ୍ୱଜାନୁ ଏ ଦୁଇନାମ ଊର୍ଦ୍ଧ୍ୱଜାନୁ ବ୍ୟକ୍ତିର ।
୪ । ସଂଜ୍ଞୁ । ସଂହତଜାନୁକ ଏ ଦୁଇନାମ ଲଗ୍ନଜାନୁ ବ୍ୟକ୍ତିର ।
୫ । ଏଡ଼ । ବଧିର ଏ ଦୁଇନାମ କାଲବ୍ୟକ୍ତିର ।
୬ । କୁବ୍ଜ । ଗଡୁଲ ଏ ଦୁଇନାମ କୁଜାବ୍ୟକ୍ତିର ।
୭ । କୁକର । କୁଣି ଏ ଦୁଇନାମ କୋମ୍ପାବ୍ୟକ୍ତିର ।
୮ । ପୃଶ୍ନି । ଅଳ୍ପତନୁ ଏ ଦୁଇନାମ ଅଳ୍ପଶରୀରବିଶିଷ୍ଟ ବ୍ୟକ୍ତିର ।
୯ । ଶ୍ରୋଣ । ପଙ୍ଗୁ ଏ ଦୁଇନାମ ଛଟାରହିତ ବ୍ୟକ୍ତିର ।
୧୦ । ମୁଣ୍ଡ । ମୁଣ୍ଡିତ ଏ ଦୁଇନାମ ଡାଙ୍ଗର ବ୍ୟକ୍ତିର ।
୧୧ । ବଳିର । କେକର ଏ ଦୁଇନାମ ଟେରା ବ୍ୟକ୍ତିର ।
୧୨ । ଖୋଡ଼ । ଖଞ୍ଜ ଏ ଦୁଇନାମ ଛୋଟା ବ୍ୟକ୍ତିର ।
୧୩ । ଜଡୁଲ । କାଳକ । ପିପ୍ଳୁ ଏ ତିନିନାମ ଜାଇମଦାଥିବା ବ୍ୟକ୍ତିର ।
୧୪ । ତିଳକ । ତିଳକାଳକ ଏ ଦୁଇନାମ ଦେହରେଥିବା ତିଳଚିହ୍ନର ।
୧୫ । ଅନାମୟ । ଆରୋଗ୍ୟ ଏ ଦୁଇନାମ ଆରୋଗ୍ୟର ।
୧୬ । ଚିକିତ୍ସା । ରୁକ୍ପ୍ରତିକ୍ରିୟା ଏ ଦୁଇନାମ ଚିକିତ୍ସାର ।
୧୭ । ଭେଷଜ । ଔଷଧ । ଭୈଷଜ୍ୟ । ଅଗଦ । ଜାୟୁ ଏ ପାଞ୍ଚନାମ ଔଷଧର ।
୧୮ । ରୁକ୍ । ରୁଜା । ଉପତାପ । ରୋଗ । ବ୍ୟାଧି । ଗଦ । ଆମୟ ଏ ସାତନାମ ସାଧାରଣ-
ରୋଗର ।

[୧] ପୁମାନ୍ ଯକ୍ଷ୍ମା କ୍ଷୟଃ ଶୋଷଃ [୨] ପ୍ରତିଶ୍ୟାୟସ୍ତୁ ପୀନସଃ ॥
[୩] ସ୍ତ୍ରୀ କ୍ଷୁତ୍ କ୍ଷୁତଂ କ୍ଷବଃ ପୁଂସି [୪] କାସସ୍ତୁ କ୍ଷବଥୁଃ ପୁମାନ୍ ।
[୫] ଶୋଫସ୍ତୁ ଶ୍ୱୟଥୁଃ ଶୋଥଃ [୬] ପାଦସ୍ଫୋଟୋ ବିପାଦିକା ॥
[୭] କିଲାସଂ ସିଧ୍ମ [୮] କଚ୍ଛ୍ୱାନ୍ତୁ ପାମ ପାମା ବିଚର୍ଚ୍ଚିକା ।
[୯] କଣ୍ଡୂଃ ଖର୍ଜ୍ଜୂଶ୍ଚ କଣ୍ଡୂୟା [୧୦] ବିସ୍ଫୋଟଃ ପିଟକସ୍ତ୍ରିଷୁ ॥
[୧୧] ବ୍ରଣୋଽସ୍ତ୍ରିୟାମୀର୍ମମରୁଃ କ୍ଲୀବେ [୧୨] ନାଡ଼ୀବ୍ରଣଃ ପୁମାନ୍ ।
[୧୩] କୋଠୋମଣ୍ଡଳକଂ [୧୪] କୁଷ୍ଠଂ ଶ୍ୱିତ୍ରେ [୧୫] ଦୁର୍ନାମକାର୍ଶସୀ
[୧୬] ଅନାହସ୍ତୁ ବିବନ୍ଧଃ ସ୍ୟାଦ୍ [୧୭] ଗ୍ରହଣୀ ରୁକ୍ ପ୍ରବାହିକା ।
[୧୮] ପ୍ରଚ୍ଛର୍ଦ୍ଦିକା ବମିଶ୍ଚ ସ୍ତ୍ରୀ ପୁମାଂସ୍ତୁ ବମଥୁଃ ସମଃ ॥

---

୧ । କ୍ଷୟ । ଶୋଷ । ଯକ୍ଷ୍ମନ୍ ଏ ତିନିନାମ ଯକ୍ଷ୍ମାକାଶ ରୋଗର ।
୨ । ପ୍ରତିଶ୍ୟାୟ । ପୀନସ ଏ ଦୁଇନାମ ପୀନସରୋଗର ।
୩ । କ୍ଷୁତ୍ । କ୍ଷୁତ । କ୍ଷବ ଏ ତିନିନାମ ଛିଙ୍କର ।
୪ । କାସ । କ୍ଷବଥୁ ଏ ଦୁଇନାମ କାଶରୋଗର ।
୫ । ଶୋଫ । ଶ୍ୱୟଥୁ । ଶୋଥ ଏ ତିନିନାମ ଶୋଥର ।
୬ । ପାଦସ୍ଫୋଟ । ବିପାଦିକା ଏ ଦୁଇନାମ ପାଦସ୍ଫୋଟ ରୋଗର ।
୭ । କିଲାସ । ସିଧ୍ମନ୍ ଏ ଦୁଇନାମ ଛଉରୋଗର ।
୮ । କଚ୍ଛୂ । ପାମନ୍ । ପାମା । ବିଚର୍ଚ୍ଚିକା ଏ ଚାରିନାମ କାଛୁରୋଗର ।
୯ । କଣ୍ଡୂ । ଖର୍ଜ୍ଜୂ । କଣ୍ଡୂୟା ଏ ତିନିନାମ ଚୂଳକା କୁଣ୍ଡିଅ ରୋଗର ।
୧୦ । ବିସ୍ଫୋଟ । ପିଟକ ଏ ଦୁଇନାମ ବିସ୍ଫୋଟକ ରୋଗର ।
୧୧ । ବ୍ରଣ । ଈର୍ମ୍ମ । ଅରୁସ୍ ଏ ତିନିନାମ ଘାଅର ।
୧୨ । ନାଡ଼ୀଘାଊ ନାଡ଼ୀବ୍ରଣ କହି ।
୧୩ । କୋଠ । ମଣ୍ଡଳକ ଏ ଦୁଇନାମ ମଣ୍ଡଳକାର କୁଷ୍ଠରୋଗର ।
୧୪ । କୁଷ୍ଠ । ଶ୍ୱିତ୍ର ଏ ଦୁଇନାମ ଶ୍ୱେତକୁଷ୍ଠର ।
୧୫ । ଦୁର୍ନାମକ । ଅର୍ଶସ୍ ଏ ଦୁଇନାମ ଅର୍ଶରୋଗର ।
୧୬ । ଆନାହ । ବିବନ୍ଧ ଏ ଦୁଇନାମ ବନ୍ଧାମୂତ୍ରବନ୍ଧ ରୋଗର ।
୧୭ । ଗ୍ରହଣୀରୁକ୍ । ପ୍ରବାହିକା ଏ ଦୁଇନାମ ଗ୍ରହଣୀ ରୋଗର ।
୧୮ । ପ୍ରଚ୍ଛର୍ଦ୍ଦିକା । ବମି । ବମଥୁ ଏ ତିନିନାମ ବାନ୍ତିରୋଗର ।

[୧] ବ୍ୟାଧିଭେଦା ବିଦ୍ରଧିଃ ସ୍ତ୍ରୀ [୨] ଜ୍ୱର [୩] ମେହ [୪] ଭଗନ୍ଦରାଃ
[୫] ଅଶ୍ମରୀ ମୂତ୍ରକୃଚ୍ଛ୍ରଂ ସ୍ୟାତ୍ ପୂର୍ବେ ଶୁକ୍ରାବଧେ ସ୍ତ୍ରିଷୁ ॥
[୬] ରୋଗହାର୍ଯ୍ୟଗଦଂକାରୋ ଭିଷଗ୍ବୈଦ୍ୟୌ ଚିକିତ୍ସକେ ।
[୭] ବାର୍ତ୍ତୋ ନିରାମୟଃ କଲ୍ୟ ଉଲ୍ଲାଘୋ ନିର୍ଗତୋ ଗଦାତ୍ ॥
[୮] ଗ୍ଲାନ ଗ୍ଲାସ୍ନୂ [୯] ଆମୟାବୀ ବିକୃତୋ ବ୍ୟାଧିତୋ ଽପଟୁଃ ।
ଆତୁରୋ ଽଭ୍ୟମିତୋ ଽଭ୍ୟାନ୍ତଃ [୧୦] ସମୌ ପାମନକଚ୍ଛୁରୌ
[୧୧] ଦଦ୍ରୁଣୋ ଦଦ୍ରୁରୋଗୀ ସ୍ୟା [୧୨] ଦର୍ଶରୋଗଯୁତୋ ଽର୍ଶସଃ ।
[୧୩] ବାତକୀ ବାତରୋଗୀ ସ୍ୟାତ୍ [୧୪] ସାତିସାରୋ ଽତିସାରକୀ ॥
[୧୫] ସ୍ୟୁଃ କ୍ଲିନ୍ନାକ୍ଷେ ଚୁଲ୍ଲ ଚିଲ୍ଲ ପିଲ୍ଲାଃ କ୍ଲିନ୍ନେ ଽକ୍ଷ୍ଣି ଚାପ୍ୟମୀ ।
[୧୬] ଉନ୍ମତ୍ତ ଉନ୍ମାଦବତି [୧୭] ଶ୍ଲେଷ୍ମଳଃ ଶ୍ଲେଷ୍ମଣଃ କଫୀ ॥

---

୧ । ବାତରୋଗବିଶେଷକୁ ବିଦ୍ରଧି କହନ୍ତି ।    ୨ । ଜ୍ୱରରୋଗକୁ ଜ୍ୱର କହନ୍ତି ।
୩ । ବହୁମୂତ୍ର ରୋଗକୁ ମେହ କହନ୍ତି ।   ୪ । ଗୁହ୍ୟାନ୍ତ ରୋଗକୁ ଭଗନ୍ଦର କହନ୍ତି ।
୫ । ଅଶ୍ମରୀ । ମୂତ୍ରକୃଚ୍ଛ୍ର ଏ ଦୁଇନାମ ମୂତ୍ରକୃଚ୍ଛ୍ର ରୋଗର ।        ( ବୈଦ୍ୟର
୬ । ରୋଗହାରିନ୍ । ଅଗଦଂକାର । ଭିଷକ୍ । ବୈଦ୍ୟ । ଚିକିତ୍ସକ । ଏ ପାଞ୍ଚନାମ
୭ । ବାର୍ତ୍ତ । ନିରାମୟ । କଲ୍ୟ । ଉଲ୍ଲାଘ ଏ ଚାରିନାମ ଅରୋଗପ୍ରାପ୍ତ ବ୍ୟକ୍ତିର ।
୮ । ଗ୍ଲାନ । ଗ୍ଲାସ୍ନୁ ଏ ଦୁଇନାମ ରୋଗାଦିଦ୍ୱାରା କ୍ଷୀଣ ହେବାର ।
୯ । ଆମୟାବିନ୍ । ବିକୃତ । ବ୍ୟାଧିତ । ଅପଟୁ । ଆତୁର । ଅଭ୍ୟମିତ । ଅଭ୍ୟାନ୍ତ ଏ ସାତନାମ ରୋଗଯୁକ୍ତବ୍ୟକ୍ତିର ।
୧୦ । ପାମନ । କଚ୍ଛୁର ଏ ଦୁଇନାମ କଚ୍ଛୁରୋଗଯୁକ୍ତ ବ୍ୟକ୍ତିର ।
୧୧ । ଦଦ୍ରୁଣ । ଦଦ୍ରୁରୋଗିନ୍ ଏ ଦୁଇନାମ ଦାଦୁରୋଗଯୁକ୍ତ ବ୍ୟକ୍ତିର ।
୧୨ । ଅର୍ଶରୋଗଯୁତ । ଅର୍ଶସ୍ ଏ ଦୁଇନାମ ଅର୍ଶରୋଗଯୁକ୍ତ ବ୍ୟକ୍ତିର ।
୧୩ । ବାତକିନ୍ । ବାତରୋଗିନ୍ ଏ ଦୁଇନାମ ବାତରୋଗଯୁକ୍ତ ବ୍ୟକ୍ତିର ।
୧୪ । ସାତିସାର । ଅତିସାରକିନ୍ ଏ ଦୁଇନାମ ଅତିସାରରୋଗଯୁକ୍ତ ବ୍ୟକ୍ତିର ।
୧୫ । କ୍ଲିନ୍ନାକ୍ଷ । ଚୁଲ୍ଲ । ପିଲ୍ଲ ଏ ଚାରିନାମ ସଜଳଚକ୍ଷୁ ବା ଚକ୍ଷୁଯୁକ୍ତ ବ୍ୟକ୍ତିର ।
୧୬ । ଉନ୍ମତ୍ତ । ଉନ୍ମାଦବାନ୍ ଏ ଦୁଇନାମ ଉନ୍ମାଦରୋଗଯୁକ୍ତ ବ୍ୟକ୍ତିର ।
୧୭ । ଶ୍ଲେଷ୍ମଳ । ଶ୍ଲେଷ୍ମଣ । କଫିନ୍ ଏ ତିନିନାମ କଫରୋଗଯୁକ୍ତ ବ୍ୟକ୍ତିର ।

[୧] ନ୍ୟୁବ୍ଜୋ ଭୁଗ୍ନେ ରୁଜା [୨] ବୃଦ୍ଧନାଭୌ ତୁଣ୍ଡିଲ ତୁଣ୍ଡିଭୌ ।
[୩] କିଲାସୀ ସିଧ୍ମଳୋ [୪] ଽନ୍ଧୋ ଦୃକ୍ [୫] ମୂର୍ଚ୍ଛାଲୋ ମୂର୍ତ୍ତ ମୂର୍ଚ୍ଛିତୌ
[୬] ଶୁକ୍ରଂ ତେଜୋ ରେତସୀ ଚ ବୀଜବୀର୍ଯ୍ୟେନ୍ଦ୍ରିୟାଣି ଚ ।
[୭] ମାୟୁଃ ପିତ୍ତଂ [୮] କଫଃ ଶ୍ଳେଷ୍ମା [୯] ସ୍ତ୍ରିୟାଂ ତୁ ତ୍ୱଗସୃଗ୍ଧରା ।
[୧୦] ପିଶିତଂ ତରସଂ ମାଂସଂ ପଲଲଂ କ୍ରବ୍ୟମାମିଷଂ ।
[୧୧] ଉତ୍ତପ୍ତଂ ଶୁଷ୍କମାଂସଂ ସ୍ୟାଦ୍ବଲ୍ଲୂରଂ ତତ୍ତ୍ରିଲିଙ୍ଗକଂ ।
[୧୨] ରୁଧିରେ ଽସୃଗ୍ଲୋହିତାସ୍ର ରକ୍ତ କ୍ଷତଜ ଶୋଣିତଂ ।
[୧୩] ବୁକ୍କା ଽଗ୍ରମାଂସଂ ହୃଦୟଂ ହୃତ୍ [୧୪] ମେଦସ୍ତୁ ବପା ବସା ।
[୧୫] ପଶ୍ଚାଦ୍ଗ୍ରୀବା ଶିରା ମନ୍ୟା [୧୬] ନାଡ଼ୀ ତୁ ଧମନୀ ଶିରା ।

---

୧ । ରୋଗଦ୍ୱାରା ବକ୍ରବ୍ୟକ୍ତିକି ନ୍ୟୁବ୍ଜ କହି ।
୨ । ତୁଣ୍ଡିଲ । ତୁଣ୍ଡିଭ ଏ ଦୁଇନାମ ବଡ଼ନାଭିଯୁକ୍ତ ବ୍ୟକ୍ତିର ।
୩ । କିଲାସିନ୍ । ସିଧ୍ମଲ ଏ ଦୁଇନାମ ଛଉରୋଗଯୁକ୍ତ ବ୍ୟକ୍ତିର ।
୪ । ଅନ୍ଧ । ଅଦୃଶ୍ ଏ ଦୁଇନାମ ଅନ୍ଧର ।
୫ । ମୂର୍ଚ୍ଛାଲ । ମୂର୍ତ୍ତ । ମୂର୍ଚ୍ଛିତ ଏ ତିନିନାମ ମୂର୍ଚ୍ଛାରୋଗଯୁକ୍ତ ବ୍ୟକ୍ତିର ।
୬ । ଶୁକ୍ର । ତେଜସ୍ । ରେତସ୍ । ବୀଜ । ବୀର୍ଯ୍ୟ । ଇନ୍ଦ୍ରିୟ ଏ ଛ ନାମ ବୀର୍ଯ୍ୟର ।
୭ । ମାୟୁ । ପିତ୍ତ ଏ ଦୁଇନାମ ପିତ୍ତର ।
୮ । କଫ । ଶ୍ଳେଷ୍ମନ୍ ଏ ଦୁଇନାମ କଫର ।
୯ । ତ୍ୱଚ୍ । ଅସୃଗ୍ଧରା ଏ ଦୁଇନାମ ଚମର ।
୧୦ । ପିଶିତ । ତରସ । ମାଂସ । ପଲଲ । କ୍ରବ୍ୟ । ଆମିଷ ଏ ଛନାମ ମାଂସର ।
୧୧ । ଉତ୍ତପ୍ତ । ଶୁଷ୍କମାଂସ । ବଲ୍ଲୂର ଏ ତିନିନାମ ଶୁଷ୍କମାଂସର ।
୧୨ । ରୁଧିର । ଅସୃକ୍ । ଲୋହିତ । ଅସ୍ର । ରକ୍ତ । କ୍ଷତଜ । ଶୋଣିତ ଏ ସାତନାମ ରକ୍ତର ।
୧୩ । ବୁକ୍କନ୍ । ଅଗ୍ରମାଂସ । ହୃଦୟ । ହୃଦ୍ ଏ ଚାରିନାମ ଅଗ୍ରମାଂସର ।
୧୪ । ମେଦସ୍ । ବପା । ବସା ଏ ତିନିନାମ ଅସ୍ଥିସ୍ଥିତମଜ୍ଜାର ।
୧୫ । ବେକର ପଶ୍ଚାତ୍ ଶିରର ନାମକୁ ମନ୍ୟା କହି ।
୧୬ । ନାଡ଼ୀ । ଧମନି । ଶିରା ଏ ତିନିନାମ ନାଡ଼ୀର ।

[୧] ତିଳକଂ କ୍ଲୋମ [୨] ମସ୍ତିଷ୍କଂ ଗୋର୍ଦ୍ଦଂ [୩] କିଟ୍ଟଂ ମଲୋଽସ୍ତ୍ରିୟାଂ
[୪] ଅନ୍ତ୍ରଂ ପୁରୀତଦ୍ [୫] ଗୁଲ୍ମସ୍ତୁ ପ୍ଲୀହା ପୁଂସ୍ୟ [୬] ଽଥ ବସ୍ନସା
ସ୍ନାୟୁଃ ସ୍ତ୍ରିୟାଂ [୭] କାଲଖଣ୍ଡ ଯକୃତୀ ତୁ ସମେ ଇମେ ॥
[୮] ସୃଣିକା ସ୍ୟନ୍ଦନୀ ଲାଲା [୯] ଦୂଷିକା ନେତ୍ରଯୋର୍ମଲଂ ।
[୧୦] ମୂତ୍ରଂ ପ୍ରସ୍ରାବ [୧୧] ଉଚ୍ଚାରାବସ୍କରୌ ଶମଲଂ ଶକୃତ୍ ।
ଗୂଥଂ ପୁରୀଷଂ ବର୍ଚ୍ଚସ୍କମସ୍ତ୍ରୀ ବିଷ୍ଠା ବିଶୌ ସ୍ତ୍ରିୟୌ ।
[୧୨] ସ୍ୟାତ୍ କର୍ପରଃ କପାଲୋଽସ୍ତ୍ରୀ [୧୩] କୀକସଂ କୁଲ୍ୟମସ୍ଥି ଚ ॥
[୧୪] ସ୍ୟାଚ୍ଛରୀରାସ୍ଥ୍ନି କଙ୍କାଲଃ [୧୫] ପୃଷ୍ଠାସ୍ଥ୍ନି ତୁ କଶେରୁକା ।
[୧୬] ଶିରୋଽସ୍ଥ୍ନି ତୁ କରୋଟିଃ ସ୍ତ୍ରୀ [୧୭] ପାର୍ଶ୍ୱାସ୍ଥ୍ନି ତୁ ପର୍ଶୁକା

---

୧ । ତିଳକ । କ୍ଲୋମ ଏ ଦୁଇନାମ ଦକ୍ଷିଣପାର୍ଶ୍ୱସ୍ଥ ଯକୃତର ।
୨ । ମସ୍ତିଷ୍କ । ଗୋର୍ଦ୍ଦ ଏ ଦୁଇନାମ ମସ୍ତକ ଘୃତର ।
୩ । କିଟ୍ଟ । ମଳ ଏ ଦୁଇନାମ ସାଧାରଣ ମଳର ।
୪ । ଅନ୍ତ୍ର । ପୁରୀତତ୍ ଏ ଦୁଇନାମ ଅନ୍ତ୍ରର ।
୫ । ଗୁଲ୍ମ । ପ୍ଲୀହନ୍ । ଏ ଦୁଇନାମ ପ୍ଲୀହାର ।
୬ । ବସ୍ନସା । ସ୍ନାୟୁ ଏ ଦୁଇନାମ ସ୍ନାୟୁନାଡର ।
୭ । କାଲଖଣ୍ଡ । ଯକୃତ ଏ ଦୁଇନାମ ଯକୃତର ।
୮ । ସୃଣିକା । ସ୍ୟନ୍ଦନୀ । ଲାଳା ଏ ତିନିନାମ ଲାଳର ।
୯ । ନେତ୍ରମଳକୁ ଦୂଷିକା କହି ।
୧୦ । ମୂତ୍ର । ପ୍ରସ୍ରାବ ଏ ଦୁଇନାମ ମୂତ୍ରର । (ଏ ନବନାମ ବିଷ୍ଠାର
୧୧ । ଉଚ୍ଚାର । ଅବସ୍କର । ଶମଳ । ଶକୃତ୍ । ପୁରୀଷ । ଗୂଥ । ବର୍ଚ୍ଚସ୍କ । ବିଷ୍ଠା । ବିଟ୍
୧୨ । କର୍ପର । କପାଳ ଏ ଦୁଇନାମ ମସ୍ତକ ଅସ୍ଥିଖଣ୍ଡର ।
୧୩ । କୀକସ । କୁଲ୍ୟ । ଅସ୍ଥି ଏ ତିନିନାମ ସାଧାରଣ ଅସ୍ଥିର ।
୧୪ । ଶରୀରର ହାଡ଼କୁ କଙ୍କାଳ କହି ।
୧୫ । ପୃଷ୍ଠଦେଶର ହାଡ଼କୁ କଶେରୁକା କହି ।
୧୬ । ମସ୍ତକର ହାଡ଼କୁ କରୋଟି କହି ।
୧୭ । ପାର୍ଶ୍ୱଦେଶର ହାଡ଼କୁ ପର୍ଶୁକା କହି ।

[୧] ଅଙ୍ଗଂ ପ୍ରତୀକୋଽବୟବୋଽପଘନୋ [୨] ଽଥ କଳେବରଂ
ଗାତ୍ରଂ ବପୁଃ ସଂହନନଂ ଶରୀରଂ ବର୍ଷ୍ମ ବିଗ୍ରହଃ ॥
କାୟୋ ଦେହଃ କ୍ଲୀବପୁଂସୋଃ ସ୍ତ୍ରିୟାଂ ମୂର୍ତ୍ତିସ୍ତନୁସ୍ତନୂଃ ।
[୩] ପାଦାଗ୍ରଂ ପ୍ରପଦଂ [୪] ପାଦଃ ପଦଙ୍ଘ୍ରିଶ୍ଚରଣୋଽସ୍ତ୍ରିୟାଂ ॥
[୫] ତଦ୍‌ଗ୍ରନ୍ଥୀ ଘୁଟିକେ ଗୁଲ୍ଫୌ [୬] ପୁମାନ୍ ପାର୍ଷ୍ଣିରଧସ୍ତୟୋଃ ।
[୭] ଜଙ୍ଘା ତୁ ପ୍ରସୃତା [୮] ଜାନୂରୁପର୍ବାଷ୍ଠୀବଦୋଽସ୍ତ୍ରିୟାଂ ॥
[୯] ସକ୍ଥି କ୍ଲୀବେ ପୁମାନୂରୁ [୧୦] ସ୍ତତ୍ସନ୍ଧିଃ ପୁଂସି ବଙ୍କ୍ଷଣଃ ।
[୧୧] ଗୁଦଂ ତ୍ୱପାନଂ ପାୟୁର୍ନା [୧୨] ବସ୍ତିର୍ନାଭେରଧୋ ଦ୍ୱୟୋଃ
[୧୩] କଟୋ ନା ଶ୍ରୋଣିଫଳକଂ କଟିଃ ଶ୍ରୋଣୀ କକୁଦ୍ମତୀ ।
[୧୪] ପଶ୍ଚାନ୍ନିତମ୍ବଃ ସ୍ତ୍ରୀକଟ୍ୟାଃ [୧୫] କ୍ଲୀବେ ତୁ ଜଘନଂ ପୁରଃ ॥

---

୧ । ଅଙ୍ଗ । ପ୍ରତୀକ । ଅବୟବ ଅପଘନ ଏ ଚାରିନାମ ହସ୍ତାଦି ଅବୟବର ।

୨ । କଳେବର । ଗାତ୍ର । ବପୁସ୍ । ସଂହନନ । ଶରୀର । ବର୍ଷ୍ମନ୍ । ବିଗ୍ରହ । କାୟ । ଦେହ । ମୂର୍ତ୍ତି । ତନୁ । ତନୂ ଏ ବାରନାମ ଶରୀରର ।

୩ । ପାଦାଗ୍ର । ପ୍ରପଦ ଏ ଦୁଇନାମ ପାଦର ଅଗ୍ରଭାଗର ।

୪ । ପାଦ । ପଦ୍ । ଅଙ୍ଘ୍ରି । ଚରଣ ଏ ଚାରିନାମ ଗୋଡ଼ର ।

୫ । ଘୁଟିକା । ଗୁଲ୍ଫ ଏ ଦୁଇନାମ ପାଦ ଗଣ୍ଠିର ।

୬ । ଗୋଡ଼ଗଣ୍ଠିର ଅଧୋଭାଗକୁ ପାର୍ଷ୍ଣି କହି ।

୭ । ଜଙ୍ଘା । ପ୍ରସୃତା ଏ ଦୁଇନାମ ଆଣ୍ଠୁର ଅଧୋଭାଗର ।

୮ । ଜାନୁ । ଊରୁପର୍ବନ୍ । ଅଷ୍ଠୀବତ୍ ଏ ତିନିନାମ ଆଣ୍ଠୁର ।

୯ । ସକ୍ଥି । ଊରୁ ଏ ଦୁଇନାମ ଊରୁଦେଶର ।

୧୦ । ଊରୁଦେଶର ସନ୍ଧିକି ବଙ୍କ୍ଷଣ କହି ।

୧୧ । ଗୁଦ । ଅପାନ । ପାୟୁ ଏ ତିନିନାମ ମଳଦ୍ୱାରର ।

୧୨ । ନାଭିର ଅଧୋଭାଗକୁ ବସ୍ତି କହି ।

୧୩ । କଟ । ଶ୍ରୋଣିଫଳକ । କଟି । ଶ୍ରୋଣୀ । କକୁଦ୍ମତୀ ଏ ପାଞ୍ଚନାମ କଙ୍କାଳର ।

୧୪ । ସ୍ତ୍ରୀର କଟିଦେଶର ପଶ୍ଚାଦ୍ଭାଗକୁ ନିତମ୍ବ କହି ।

୧୫ । ସ୍ତ୍ରୀ କଟିର ଅଗ୍ରଭାଗକୁ ଜଘନ କହି ।

[୧] କୂପକୌ ତୁ ନିତମ୍ବସ୍ଥୌ ଦ୍ୱୟହୀନେ କୁକୁନ୍ଦରେ ।
[୨] ସ୍ତ୍ରିୟାଂ ସ୍ଫିଚୌ କଟିପ୍ରୋଥା [୩] ଉପସ୍ଥୋ ବକ୍ଷ୍ୟମାଣୟୋଃ ॥
[୪] ଭଗଂ ଯୋନି ର୍ଦ୍ୱୟୋଃ [୫] ଶିଶ୍ନୋ ମେଢ୍ରୋ ମେହନ ଶେଫସି
[୬] ମୁଷ୍କୋ ଽଣ୍ଡକୋଷୋ ବୃଷଣଃ [୭] ପୃଷ୍ଠବଂଶାଧରେ ତ୍ରିକଂ ॥
[୮] ପିଚଣ୍ଡ କୁକ୍ଷୀ ଜଠରୋଦରଂ ତୁନ୍ଦଂ [୯] ସ୍ତନୌ କୁଚୌ ।
[୧୦] ଚୂଚୁକଂ ତୁ କୁଚାଗ୍ରଂ ସ୍ୟା [୧୧] ନ୍ନ ନା କ୍ରୋଡ଼ଂ ଭୁଜାନ୍ତରଂ
[୧୨] ଉରୋ ବତ୍ସଂ ଚ ବକ୍ଷଶ୍ଚ [୧୩] ପୃଷ୍ଠଂ ତୁ ଚରମଂ ତନୋଃ ।
[୧୪] ସ୍କନ୍ଧୋ ଭୁଜଶିରୋ ଽଂଶୋ ଽସ୍ତ୍ରୀ [୧୫] ସନ୍ଧୀ ତସ୍ୟୈବ ଜତ୍ରୁଣୀ ॥
[୧୬] ବାହୁମୂଲେ ଉଭୌ କକ୍ଷୌ [୧୭] ପାର୍ଶ୍ୱମସ୍ତ୍ରୀ ତୟୋରଧଃ ।

---

୧ । ନିତମ୍ବସ୍ଥିତ ଗର୍ତ୍ତର ନାମକୁ କୁକୁନ୍ଦର କହନ୍ତି ।
୨ । ସ୍ଫିଚ୍ । କଟିପ୍ରୋଥ ଏ ଦୁଇନାମ ପିଚାର ।
୩ । ଉତ୍ପତ୍ତି ସ୍ଥାନ ଶେଷକୁ ଉପସ୍ଥ କହନ୍ତି ।
୪ । ଭଗ । ଯୋନି ଏ ଦୁଇନାମ ଯୋନିର ।
୫ । ଶିଶ୍ନ । ମେଢ୍ର । ମେହନ । ଶେଫ ଏ ଚାରିନାମ ଉପସ୍ଥର ।
୬ । ମୁଷ୍କ । ଅଣ୍ଡକୋଷ । ବୃଷଣ ଏ ତିନିନାମ ଅଣ୍ଡକୋଷର ।
୭ । ପୃଷ୍ଠମେରୁଦଣ୍ଡର ଅଧୋଭାଗକୁ ତ୍ରିକ କହନ୍ତି ।
୮ । ପିଚଣ୍ଡ । କୁକ୍ଷୀ । ଜଠର । ଉଦର । ତୁନ୍ଦ ଏ ପାଞ୍ଚନାମ ଉଦରର ।
୯ । ସ୍ତନ । କୁଚ ଏ ଦୁଇନାମ ସ୍ତନର ।
୧୦ । ଚୂଚୁକ । କୁଚାଗ୍ର ଏ ଦୁଇନାମ ସ୍ତନ ଅଗ୍ରଭାଗର ।
୧୧ । କ୍ରୋଡ଼ । ଭୁଜାନ୍ତର ଏ ଦୁଇନାମ କ୍ରୋଡ଼ର ।
୧୨ । ଉରସ୍ । ବତ୍ସ । ବକ୍ଷସ୍ ଏ ତିନିନାମ ବକ୍ଷସ୍ଥଳର ।
୧୩ । ପୃଷ୍ଠ । ଚରମ ଏ ଦୁଇନାମ ଶରୀର ପଶ୍ଚାଦ୍ଭାଗର ଅର୍ଥାତ୍ ପିଠିର ।
୧୪ । ସ୍କନ୍ଧ । ଭୁଜଶିରସ୍ । ଅଂଶ ଏ ତିନିନାମ ସ୍କନ୍ଧର ।
୧୫ । ସ୍କନ୍ଧ ଓ ବକ୍ଷସ୍ଥଳର ସନ୍ଧିସ୍ଥାନକୁ ଜତ୍ରୁଣୀ କହନ୍ତି ।
୧୬ । ବାହୁମୂଳ । କକ୍ଷ ଏ ଦୁଇନାମ କକ୍ଷଦେଶର ଅର୍ଥାତ୍ କାଖର ।
୧୭ । ବାହୁମୂଳର ଅଧୋଭାଗକୁ ପାର୍ଶ୍ୱ କହନ୍ତି ।

[୧] ମଧ୍ୟମଂ ଚାବଲଗ୍ନଂ ଚ ମଧ୍ୟୋ଼ ଽସ୍ତ୍ରୀ ଦ୍ୱୌ ପରୌ ଦ୍ୱୟୋଃ ॥
[୨] ଭୁଜ ବାହୂ ପ୍ରବେଷ୍ଟୋ ଦୋଃ [୩] ସ୍ୟାତ୍ କଫୋଣିସ୍ତୁ କୂର୍ପରଃ
[୪] ଅସ୍ୟୋପରି ପ୍ରଗଣ୍ଡଃ ସ୍ୟାତ୍ [୫] ପ୍ରକୋଷ୍ଠସ୍ତସ୍ୟ ଚାପ୍ୟଧଃ ॥
[୬] ମଣିବନ୍ଧାଦାକନିଷ୍ଠଂ କରସ୍ୟ କରଭୋ ବହିଃ ।
[୭] ପଞ୍ଚଶାଖଃ ଶୟଃ ପାଣି [୮] ସ୍ତର୍ଜନୀ ସ୍ୟାତ୍ ପ୍ରଦେଶନୀ ॥
[୯] ଅଙ୍ଗୁଲ୍ୟଃ କରଶାଖାଃ ସ୍ୟୁଃ [୧୦] ପୁଂସ୍ୟଙ୍ଗୁଷ୍ଠଃ [୧୧] ପ୍ରଦେଶିନୀ
[୧୨] ମଧ୍ୟମା [୧୩] ନାମିକା ଚାପି [୧୪] କନିଷ୍ଠା ଚେତି ତାଃ କ୍ରମାତ୍ ॥
[୧୫] ପୁନର୍ଭବଃ କରରୁହୋ ନଖୋ ଽସ୍ତ୍ରୀ ନଖରୋ ଽସ୍ତ୍ରିୟାଂ ।
[୧୬] ପ୍ରାଦେଶ [୧୭] ତାଲ [୧୮] ଗୋକର୍ଣ୍ଣାସ୍ତର୍ଜନ୍ୟାଦିଯୁତେ ତତେ
ଅଙ୍ଗୁଷ୍ଠେ ସକନିଷ୍ଠେ ସ୍ୟା [୧୯] ଦ୍ୱିତସ୍ତିର୍ଦ୍ୱାଦଶାଙ୍ଗୁଳଃ ॥

---

୧ । ମଧ୍ୟମ । ଅବଲଗ୍ନ । ମଧ୍ୟ ଏ ତିନିନାମ ଶରୀର ମଧ୍ୟଭାଗର ।
୨ । ଭୁଜ । ବାହୁ । ପ୍ରବେଷ୍ଟ । ଦୋସ୍ ଏ ଚାରିନାମ ହସ୍ତର ।
୩ । କଫୋଣି । କୂର୍ପର ଏ ଦୁଇନାମ କହୁଣିର ।
୪ । କହୁଣିର ଉପରଭାଗକୁ ପ୍ରଗଣ୍ଡ କହି ।
୫ । କହୁଣିର ଅଧୋଭାଗକୁ ପ୍ରକୋଷ୍ଠ କହି ।
୬ । ମଣିବନ୍ଧ ଅବଧି କନିଷ୍ଠାଙ୍ଗୁଳି ମୂଳ ପର୍ଯ୍ୟନ୍ତ ହସ୍ତର ବହିର୍ଭାଗକୁ କରଭ କହି ।
୭ । ପଞ୍ଚଶାଖ । ଶୟ । ପାଣି ଏ ତିନିନାମ ହସ୍ତର ।
୮ । ତର୍ଜନୀ । ପ୍ରଦେଶନୀ ଏ ଦୁଇନାମ ତର୍ଜନୀ ଅଙ୍ଗୁଳିର ।
୯ । ଅଙ୍ଗୁଳି । କରଶାଖା ଏ ଦୁଇନାମ ସାଧାରଣ ଅଙ୍ଗୁଳିର ।
୧୦ । ପ୍ରଥମ ଅଙ୍ଗୁଳିକି ଅଙ୍ଗୁଷ୍ଠ କହି । ୧୧ । ଦ୍ୱିତୀୟ ଅଙ୍ଗୁଳିକି ପ୍ରଦେଶିନୀ କହି ।
୧୨ । ତୃତୀୟ ଅଙ୍ଗୁଳିକି ମଧ୍ୟମା କହି । ୧୩ । ଚତୁର୍ଥ ଅଙ୍ଗୁଳିକି ଅନାମିକା କହି ।
୧୪ । ପଞ୍ଚମ ଅଙ୍ଗୁଳିକି କନିଷ୍ଠା କହି ।
୧୫ । ପୁନର୍ଭବ । କରରୁହ । ନଖ । ନଖର ଏ ଚାରିନାମ ନଖର ।
୧୬ । ତର୍ଜନୀ ଓ ଅଙ୍ଗୁଷ୍ଠ ଦୁଇଙ୍କ ବିସ୍ତାରକୁ ପ୍ରାଦେଶ କହି ।
୧୭ । ଅଙ୍ଗୁଷ୍ଠ ଓ ମଧ୍ୟମାଙ୍ଗୁଳି ଏ ଦୁହିଙ୍କ ବିସ୍ତାରକୁ ତାଲ କହି ।
୧୮ । ଅଙ୍ଗୁଷ୍ଠ ଓ ଅନାମିକାଙ୍ଗୁଳି ଦୁହିଙ୍କ ବିସ୍ତାରକୁ ଗୋକର୍ଣ୍ଣ କହି ।
୧୯ । ଅଙ୍ଗୁଷ୍ଠ ଓ କନିଷ୍ଠାଙ୍ଗୁଳି ଏ ଦୁହିଙ୍କ ବିସ୍ତାରକୁ ବିତସ୍ତି ଅର୍ଥାତ୍ ବିଘତ କହି ।

[୧] ପାଣୌ ଚପେଟ ପ୍ରତଲ ପ୍ରହସ୍ତା ବିସ୍ତୃତାଙ୍ଗୁଳୌ ।
[୨] ଦ୍ୱୌ ସଂହତୌ ସଂହତଲଃ ପ୍ରତଲୌ ବାମଦକ୍ଷିଣୌ ॥
[୩] ପାଣିର୍ନିକୁବ୍ଜଃ ପ୍ରସୃତ [୪] ସ୍ତୌ ଯୁତାବଞ୍ଜଳିଃ ପୁମାନ୍ ।
[୫] ପ୍ରକୋଷ୍ଠେ ବିସ୍ତୃତକରେ ହସ୍ତୋ [୬] ମୁଷ୍ଟ୍ୟା ତୁ ବଦ୍ଧୟା ।
ସରତ୍ନିଃ ସ୍ୟା [୭] ଦରତ୍ନିସ୍ତୁ ନିଷ୍କନିଷ୍ଠେନ ମୁଷ୍ଟିନା ।
[୮] ବ୍ୟାମୋ ବାହ୍ୱୋଃ ସକରୟୋସ୍ତତୟୋସ୍ତିର୍ଯ୍ୟଗନ୍ତରଂ ।
[୯] ଊର୍ଦ୍ଧ୍ୱବିସ୍ତୃତଦୋଃ ପାଣିନୃମାନେ ପୌରୁଷଂ ତ୍ରିଷୁ ।
[୧୦] କଣ୍ଠୋ ଗଳୋ [୧୧] ଽଥ ଗ୍ରୀବାୟାଂ ଶିରୋଧିଃ କନ୍ଧରେତ୍ୟପି ।
[୧୨] କମ୍ବୁଗ୍ରୀବା ତ୍ରିରେଖା ସା [୧୩] ଵଟୁର୍ଘାଟା କୃକାଟିକା ।
[୧୪] ବକ୍ତ୍ରାସ୍ୟେ ବଦନଂ ତୁଣ୍ଡମାନନଂ ଲପନଂ ମୁଖଂ ॥

---

୧ । ଚପେଟ । ପ୍ରତଲ । ପ୍ରହସ୍ତ ଏ ତିନିନାମ ଚାପୁଡ଼ାର ।
୨ । ବାମ ଦକ୍ଷିଣ ଏକଠେ ଦୁଇଚାପୁଡ଼ାକୁ ସଂହତଳ କହି ।
୩ । କୁବ୍ଜପାଣିକି ପ୍ରସୃତ କହି ।
୪ । ଦୁଇପ୍ରସୃତି ଏକତ୍ରଯୋଗକୁ ଅଞ୍ଜଳି କହି ।
୫ । କହୁଣି ଠାରୁ ଅଙ୍ଗୁଳିର ଅଗ୍ର ପର୍ଯ୍ୟନ୍ତ ନାମର ହସ୍ତ କହି ।
୬ । ମୁଷ୍ଟିବନ୍ଧ ହାତକୁ [ ମୁଠିଣିକୁ ] ସରତ୍ନି କହି ।
୭ । କନିଷ୍ଠାଙ୍ଗୁଳି ଭିନ୍ନ ମୁଷ୍ଟିବନ୍ଧ ହାତକୁ ଅରତ୍ନି କହି ।
୮ । ଦୁଇବାହୁ ପ୍ରସାରିତ ସ୍ଥାନକୁ ବ୍ୟାମ ଅର୍ଥାତ୍ ବେଁ କହି ।
୯ । ଊର୍ଦ୍ଧ୍ୱବାହୁ ମନୁଷ୍ୟର ପରିମାଣକୁ ପୁରୁଷ କହି ।
୧୦ । କଣ୍ଠ । ଗଳ, ଏ ଦୁଇନାମ କଣ୍ଠଦେଶର ।
୧୧ । ଗ୍ରୀବା । ଶିରୋଧି । କନ୍ଧର ଏ ତିନିନାମ ଗ୍ରୀବାର ।
୧୨ । ତ୍ରିରେଖାଯୁକ୍ତ ଗ୍ରୀବାକୁ କମ୍ବୁଗ୍ରୀବା କହି ।
୧୩ । ଅବଟୁ । ଘାଟା । କୃକାଟିକା ଏ ତିନିନାମ ବେକର ।
୧୪ । ବକ୍ତ୍ର । ଆସ୍ୟ । ବଦନ । ତୁଣ୍ଡ । ଆନନ । ଲପନ । ମୁଖ ଏ ସାତନାମ ମୁହଁର ।

[୧] କ୍ଳୀବେ ଘ୍ରାଣଂ ଗନ୍ଧବହା ଘୋଣା ନାସା ଚ ନାସିକା ।
[୨।୩।୪] ଓଷ୍ଠାଧରୌ ତୁ ରଦନଚ୍ଛଦୌ ଦଶନବାସସୀ ॥
[୫] ଅଧଃ ସ୍ତାଚ୍ଚିବୁକଂ [୬] ଗଣ୍ଡୌ କପୋଲୌ [୭] ତତ୍ପରୋ ହନୁଃ
[୮] ରଦନା ଦଶନା ଦନ୍ତା ରଦା [୯] ସ୍ତାଳୁ ତୁ କାକୁଦଂ ॥
[୧୦] ରସଜ୍ଞା ରସନା ଜିହ୍ୱା [୧୧] ପ୍ରାନ୍ତାବୋଷ୍ଠସ୍ୟ ସୃକ୍କଣୀ ।
[୧୨] ଲଲାଟମଳିକଂ ଗୋଧି [୧୩] ରୂର୍ଦ୍ଧ୍ୱେ ଦୃଗ୍ଭ୍ୟାଂ ଭ୍ରୂବୌ ସ୍ତ୍ରିୟାଂ ॥
[୧୪] କୂର୍ଚ୍ଚମସ୍ତ୍ରୀ ଭ୍ରୂବୋର୍ମ୍ମଧ୍ୟଂ [୧୫] ତାରକାକ୍ଷ୍ଣଃ କନୀନିକା ।
[୧୬] ଲୋଚନଂ ନୟନଂ ନେତ୍ରମୀକ୍ଷଣଂ ଚକ୍ଷୁରକ୍ଷିଣୀ ॥
ଦୃଗ୍‌ଦୃଷ୍ଟୀ ଚ [୧୭] ସ୍ରୁ ନେତ୍ରାମ୍ବୁ ରୋଦନଂ ଚାସ୍ରମଶ୍ରୁ ଚ ।

---

୧ । ଘ୍ରାଣ । ଗନ୍ଧବହା । ଘୋଣା । ନାସା । ନାସିକା ଏ ପାଞ୍ଚନାମ ନାସିକାର ।
୨ । ଓଷ୍ଠାଧର । ରଦନଚ୍ଛଦ । ଦଶନବାସସ୍ ଏ ତିନିନାମ ଦୁଇଓଷ୍ଠର ।
୩ । ଉପର ଓଷ୍ଠର ନାମକୁ ଓଷ୍ଠ କହି ।
୪ । ତଳ ଓଷ୍ଠକୁ ଅଧର କହନ୍ତି ।
୫ । ଓଷ୍ଠର ଅଧୋଭାଗକୁ ଚିବୁକ କହି ।
୬ । ଗଣ୍ଡ । କପୋଳ ଏ ଦୁଇନାମ ଗାଲର ।
୭ । ଗାଲର ପରଭାଗକୁ ହନୁ କହି ।
୮ । ରଦନ । ଦଶନ । ଦନ୍ତ । ରଦ ଏ ଚାରିନାମ ଦନ୍ତର ।
୯ । ତାଳୁ । କାକୁଦ ଏ ଦୁଇନାମ ତାଳୁର ।
୧୦ । ରସଜ୍ଞା । ରସନା । ଜିହ୍ୱା ଏ ତିନିନାମ ଜିହ୍ୱାର ।
୧୧ । ଓଷ୍ଠର ପ୍ରାନ୍ତଭାଗକୁ ସୃକ୍କଣୀ କହି ।
୧୨ । ଲଲାଟ । ଅଳିକ । ଗୋଧି ଏ ତିନିନାମ କପାଳର ।
୧୩ । ଚକ୍ଷୁ ଉପରକୁ ଭ୍ରୂ କହି ।
୧୪ । ଦୁଇ ଭ୍ରୂର ମଧ୍ୟଭାଗକୁ କୂର୍ଚ୍ଚ କହି ।
୧୫ । ତାରକା । କନୀନିକା ଏ ଦୁଇନାମ ଆଖିତାରାର ।
୧୬ । ଲୋଚନ । ନୟନ । ନେତ୍ର । ଈକ୍ଷଣ । ଚକ୍ଷୁ । ଅକ୍ଷି ଏ ଛଅନାମ ଚକ୍ଷୁର ।
୧୭ । ଅସ୍ରୁ । ନେତ୍ରାମ୍ବୁ । ରୋଦନ । ଅସ୍ର । ଅଶ୍ରୁ ଏ ପାଞ୍ଚନାମ ଲୁହର ।

[୧] ଅପାଙ୍ଗୌ ନେତ୍ରୟୋ ରନ୍ତୌ [୨] କଟାକ୍ଷୋ ଽପାଙ୍ଗଦର୍ଶନେ ।
[୩] କର୍ଣ୍ଣ ଶବ୍ଦଗ୍ରହୌ ଶ୍ରୋତ୍ରଂ ଶ୍ରୁତିଃ ସ୍ତ୍ରୀ ଶ୍ରବଣଂ ଶ୍ରବଃ ।
[୪] ଉତ୍ତମାଙ୍ଗଂ ଶିରଃ ଶୀର୍ଷଂ ମୂର୍ଦ୍ଧା ନା ମସ୍ତକୋ ଽସ୍ତ୍ରିୟାଂ ॥
[୫] ଚିକୁରଃ କୁନ୍ତଳୋ ବାଳଃ କଚଃ କେଶଃ ଶିରୋରୁହଃ ।
[୬] ତଦ୍ବୃନ୍ଦେ କୈଶିକଂ କୈଶ୍ୟ [୭] ମଳକା ଶ୍ଚୂର୍ଣ୍ଣକୁନ୍ତଳାଃ ।
[୮] ତେ ଲଲାଟେ ଭ୍ରମରକାଃ [୯] କାକପକ୍ଷଃ ଶିଖଣ୍ଡକଃ ।
[୧୦] କବରୀ କେଶବେଶୋ [୧୧] ଽଥ ଧମ୍ମିଲ୍ଲାଃ ସଂୟତାଃ କଚାଃ ॥
[୧୨] ଶିଖା ଚୂଡ଼ା କେଶପାଶୀ [୧୩] ବ୍ରତିନସ୍ତୁ ଜଟା ସଟା ।
[୧୪] ବେଣିଃ ପ୍ରବେଣିଃ [୧୫] ଶୀର୍ଷଣ୍ୟ ଶିରସ୍ୟୌ ବିଶଦେ କଚେ ।
[୧୬] ପାଶଃ ପକ୍ଷଶ୍ଚ ହସ୍ତଶ୍ଚ କଲାପାର୍ଥାଃ କଚାତ୍ପରେ ।

---

୧ ଚକ୍ଷୁଦ୍ୱୟର ଅନ୍ତଭାଗକୁ ଅପାଙ୍ଗ କହି ।

୨ । ଚକ୍ଷୁର ଅନ୍ତଭାଗରେ ଚାହିଁବାର ନାମକୁ କଟାକ୍ଷ କହି ।

୩ । କର୍ଣ୍ଣ । ଶବ୍ଦଗ୍ରହ । ଶ୍ରୋତ୍ର । ଶ୍ରୁତି । ଶ୍ରବଣ । ଶ୍ରବସ୍ ଏ ଛଅନାମ କାନର ।

୪ । ଉତ୍ତମାଙ୍ଗ । ଶିରସ୍ । ଶୀର୍ଷ । ମୂର୍ଦ୍ଧନ୍ । ମସ୍ତକ ଏ ପାଞ୍ଚନାମ ମସ୍ତକର ।

୫ । ଚିକୁର । କୁନ୍ତଳ । ବାଳ । କଚ । କେଶ । ଶିରୋରୁହ ଏ ଛଅନାମ କେଶର ।

୬ । କୈଶିକ । କୈଶ୍ୟ ଏ ଦୁଇନାମ କେଶସମୂହର ।

୭ । ଅଳକା । ଚୂର୍ଣ୍ଣକୁନ୍ତଳା ଏ ଦୁଇନାମ ବାଙ୍କକେଶର ।

୮ । ଲଲାଟଉପର ବକ୍ରକେଶକୁ ଭ୍ରମରକ କହି ।

୯ । କାକପକ୍ଷ । ଶିଖଣ୍ଡକ ଏ ଦୁଇନାମ ବାଳକଙ୍କ ଚୂଳିର ।

୧୦ । କବରୀ । କେଶବେଶ ଏ ଦୁଇନାମ କେଶଖୋସାର ।

୧୧ । ଏକତ୍ର ବନ୍ଧା କେଶର ନାମକୁ ଧମ୍ମିଲ୍ଲ କହି ।

୧୨ । ଶିଖା । ଚୂଡ଼ା । କେଶପାଶୀ ଏ ତିନିନାମ ଶିଖାର ।

୧୩ । ଜଟା । ସଟା ଏ ଦୁଇନାମ ଜଟାର ।

୧୪ । ବେଣି । ପ୍ରବେଣି ଏ ଦୁଇନାମ ବେଣୀର ।

୧୫ । ଶୀର୍ଷଣ୍ୟ । ଶିରସ୍ୟ ଏ ଦୁଇନାମ ନିର୍ମଳକେଶର ।

୧୬ । କେଶପାଶ । କେଶପକ୍ଷ । କେଶହସ୍ତ ଏ ତିନିନାମ କେଶସମୂହର ।

[୧] ତନୂରୁହଂ ରୋମ ଲୋମ [୨] ତଦ୍‌ବୃଦ୍ଧୌ ଶ୍ମଶ୍ରୁ ପୁଂ ମୁଖେ ॥
[୩] ଆକଳ୍ପ ବେଶୌ ନେପଥ୍ୟଂ ପ୍ରତିକର୍ମ ପ୍ରସାଧନଂ ।
ଦଶୈତେ ତ୍ରିଷୁ [୪] ଲଂ କର୍ତ୍ତାଲଙ୍କରିଷ୍ଣୁଶ୍ଚ ମଣ୍ଡିତଃ ॥
ପ୍ରସାଧିତୋଽଲଙ୍କୃତଶ୍ଚ ଭୂଷିତଶ୍ଚ ପରିଷ୍କୃତଃ ।
[୫] ବିଭ୍ରାଡ୍ ଭ୍ରାଜିଷ୍ଣୁ ରୋଚିଷ୍ଣୁ [୬] ଭୂଷା ତୁ ସ୍ୟାଦଲଂକ୍ରିୟା ॥
[୭] ଅଲଙ୍କାର ସ୍ତ୍ୱାଭରଣଂ ପରିଷ୍କାରୋ ବିଭୂଷଣଂ ।
ମଣ୍ଡନଂ ଚ [୮] ଥ ମୁକୁଟଂ କିରୀଟଂ ପୁଂ, ନପୁଂସକଂ ॥
[୯] ଚୂଡ଼ାମଣିଃ ଶିରୋରତ୍ନେ [୧୦] ତରଲୋ ହାରମଧ୍ୟଗଃ ।
[୧୧] ବାଳପାଶ୍ୟା ପାରିତଥ୍ୟା [୧୨] ପତ୍ରପାଶ୍ୟା ଲଲାଟିକା ॥
[୧୩] କର୍ଣ୍ଣିକା ତାଳପତ୍ରଂ ସ୍ୟାତ୍ [୧୪] କୁଣ୍ଡଳଂ କର୍ଣବେଷ୍ଟନଂ ।

---

୧ । ତନୂରୁହ । ରୋମନ୍ । ଲୋମନ୍ ଏ ତିନିନାମ ଲୋମର ।
୨ । ପୁରୁଷର ମୁଖସ୍ଥିତ ବଢ଼ିଲୋମରନାମ ଶ୍ମଶ୍ରୁ ଅର୍ଥାତ୍ ନିଶ ଦାଢ଼ୀ ।
୩ । ଆକଳ୍ପ । ବେଶ । ନେପଥ୍ୟ । ପ୍ରତିକର୍ମ, । ପ୍ରସାଧନ ଏ ପାଞ୍ଚନାମ ସାଧାରଣ ବେଶର ।
୪ । ଅଲଂକର୍ତ୍ତୃ । ଅଲଂକରିଷ୍ଣୁ । ମଣ୍ଡିତ । ପ୍ରସାଧିତ । ଅଲଂକୃତ । ଭୂଷିତ । ପରିଷ୍କୃତ ଏ ସାତନାମ ଅଳଂକାରଯୁକ୍ତ ବ୍ୟକ୍ତିର ।
୫ । ବିଭ୍ରାଜ୍ । ଭ୍ରାଜିଷ୍ଣୁ । ରୋଚିଷ୍ଣୁ ଏ ତିନିନାମ ପ୍ରକାଶଶୀଳର ।
୬ । ଭୂଷା । ଅଲଂକ୍ରିୟା ଏ ଦୁଇନାମ ଭୂଷଣକ୍ରିୟାର ।
୭ । ଅଲଙ୍କାର । ଆଭରଣ । ପରିଷ୍କାର । ବିଭୂଷଣ । ମଣ୍ଡନ ଏ ପାଞ୍ଚନାମ ସାଧାରଣ ଅଳଂକାରର ।
୮ । ମୁକୁଟ । କିରୀଟ ଏ ଦୁଇନାମ ମୁଣ୍ଡ ମୁକୁଟର ।
୯ । ଚୂଡ଼ାମଣି । ଶିରୋରତ୍ନ ଏ ଦୁଇନାମ ମସ୍ତକଚୂଡ଼ାମଣିର ।
୧୦ । ହାରର ମଧ୍ୟସ୍ଥିତ ମଣିର ତରଳ କହି ।
୧୧ । ବାଳପାଶ୍ୟା । ପାରିତଥ୍ୟ ଏ ଦୁଇନାମ ମସ୍ତକଆଭରଣ ବିନ୍ଦିର ।
୧୨ । ପତ୍ରପାଶ୍ୟା । ଲଲାଟିକା ଏ ଦୁଇନାମ ଲଲାଟଭୂଷାର ।
୧୩ । କର୍ଣ୍ଣିକା । ତାଳପତ୍ର ଏ ଦୁଇନାମ ତଡ଼କା କର୍ଣ୍ଣଭୂଷଣର
୧୪ । କୁଣ୍ଡଳ । କର୍ଣ୍ଣବେଷ୍ଟନ ଏ ଦୁଇନାମ କୁଣ୍ଡଳର ।

[୧] ଗ୍ରୈବେୟକଂ କଣ୍ଠଭୂଷା [୨] ଲମ୍ବନଂ ସ୍ୟାଲ୍ଲଲନ୍ତିକା ।
[୩] ସ୍ୱର୍ଣ୍ଣୈଃ ପ୍ରାଲମ୍ବିକା [୪] ଥୋରଃସୂତ୍ରିକା ମୌକ୍ତିକୈଃ କୃତା ॥
[୫] ହାରୋ ମୁକ୍ତାବଳୀ [୬] ଦେବଚ୍ଛନ୍ଦୋ ୧ସୌ ଶତଯଷ୍ଟିକଃ ।
[୭] ହାରଭେଦା ଯଷ୍ଟିଭେଦା ଗୁଚ୍ଛ ଗୁଚ୍ଛାର୍ଦ୍ଧ ଗୋସ୍ତନାଃ ॥
ଅର୍ଦ୍ଧହାରୋ ମାଣବକ [୮] ଏକାବଲ୍ୟେକ ଯଷ୍ଟିକା ।
[୯] ସୈବ ନକ୍ଷତ୍ରମାଳା ସ୍ୟାତ୍ ସପ୍ତବିଂଶତି ମୌକ୍ତିକୈଃ ॥
[୧୦] ଆବାପକଃ ପାରିହାର୍ଯ୍ୟଃ କଟକୋ ବଲୟୋ ୧ସ୍ତ୍ରିୟାଂ ।
[୧୧] କେୟୂରମଙ୍ଗଦଂ ତୁଲ୍ୟେ [୧୨] ଅଙ୍ଗୁଳୀୟକମୂର୍ମ୍ମିକା ॥
[୧୩] ସାକ୍ଷରାଙ୍ଗୁଳି ମୁଦ୍ରା ସ୍ୟାତ୍ [୧୪] କଙ୍କଣଂ କରଭୂଷଣଂ ।

---

୧ । ଗ୍ରୈବେୟକ । କଣ୍ଠଭୂଷା ଏ ଦୁଇନାମ କଣ୍ଠଭୂଷଣର ।
୨ । ଲମ୍ବନ । ଲଲନ୍ତିକା ଏ ଦୁଇନାମ କଣ୍ଠମାଳାର ।
୩ । ସୁବର୍ଣ୍ଣମାଳାକୁ ପ୍ରାଲମ୍ବିକା କହି ।
୪ । ମୁକ୍ତାମାଳାକୁ ଉରଃସୂତ୍ରିକା କହି ।
୫ । ହାର । ମୁକ୍ତାବଳୀ ଏ ଦୁଇନାମ ହାରର ।
୬ । ଦେବଚ୍ଛନ୍ଦ । ଶତଯଷ୍ଟିକ ଏ ଦୁଇନାମ ଶତନଳହାରର ।
୭ । ଗୁଚ୍ଛ । ଗୁଚ୍ଛାର୍ଦ୍ଧ । ଗୋସ୍ତନ । ଅର୍ଦ୍ଧହାର । ମାଣବକ ଏ ପାଞ୍ଚନାମ ହାରବିଶେଷର
୮ । ଏକନଳୀ ହାରକୁ ଏକାବଳୀ କହି ।
୯ । ସତାଇଶ ମୁକ୍ତାଯୁକ୍ତ ହାରକୁ ନକ୍ଷତ୍ରମାଳା କହି ।
୧୦ । ଆବାପକ । ପାରିହାର୍ଯ୍ୟ । କଟକ । ବଳୟ ଏ ଚାରିନାମ ଖଡୁର ।
୧୧ । କେୟୂର । ଅଙ୍ଗଦ ଏ ଦୁଇନାମ ତାଡ଼ର ।
୧୨ । ଅଙ୍ଗୁଳୀୟକ ଊର୍ମ୍ମିକା ଏ ଦୁଇନାମ ମୁଦିର ।
୧୩ । ଅକ୍ଷରଯୁକ୍ତ ମୁଦିକି ଅଙ୍ଗୁଳମୁଦ୍ରା କହି ।
୧୪ । କରଭୂଷଣକୁ କଙ୍କଣ କହି ।

[୧] ସ୍ତ୍ରୀକଟ୍ୟାଂ ମେଖଲା କାଞ୍ଚୀ ସପ୍ତକୀ ରସନା ତଥା ।
କ୍ଲୀବେ ସାରସନଂ ଚ [୨] ଥ ପୁଂସ୍କଟ୍ୟାଂ ଶୃଙ୍ଖଲଂ ତ୍ରିଷୁ ॥
[୩] ପାଦାଙ୍ଗଦଂ ତୁଲାକୋଟି ର୍ମଞ୍ଜୀରେ ନୂପୁରୋ ଽସ୍ତ୍ରିୟାଂ ।
ହଂସକଃ ପାଦକଟକଃ [୪] କିଙ୍କିଣୀ କ୍ଷୁଦ୍ରଘଣ୍ଟିକା ॥
[୫] ତ୍ୱକ୍‌ଫଲଂ କୃମିରୋମାଣି ବସ୍ତ୍ରଯୋର୍ନିର୍ଦ୍ଦଶ ତ୍ରିଷୁ ।
[୬] ବାଲ୍କଂ କ୍ଷୌମାଦ [୭] ଫାଲଂ ତୁ କାର୍ପାସଂ ବାଦରଂ ଚ ତତ୍ ।
[୮] କୌଷେୟଂ କୃମିକୋଷୋତ୍ଥଂ [୯] ରାଙ୍କବ ମୃଗରୋମଜଂ ।
[୧୦] ଅନାହତଂ ନିଷ୍ପ୍ରବାଣି ତନ୍ତ୍ରକଂ ଚ ନବାମ୍ବରେ ॥
[୧୧] ତସ୍ୟାଦୁଦ୍ଗମନୀୟଂ ଯଦ୍ଧୌତଯୋର୍ବସ୍ତ୍ରଯୋର୍ଯୁଗଂ ।
[୧୨] ପତ୍ରୋର୍ଣ୍ଣଂ ଧୌତକୌଶେୟଂ [୧୩] ବହୁମୂଲ୍ୟଂ ମହାଧନଂ ॥
[୧୪] କ୍ଷୌମଂ ଦୁକୂଲଂ ସ୍ୟା [୧୫] ଦ୍ୱେତୁ ନିବୀତଂ ପ୍ରାବୃତଂ ତ୍ରିଷୁ ।

---

୧ । ମେଖଳା । କାଞ୍ଚୀ । ସପ୍ତକୀ । ରଶନା ଏ ଗ୍ରଣନାମ ସ୍ତ୍ରୀ କଟିଅଭରଣବଶେଷର
୨ । ପୁରୁଷ କଟିଅଭରଣକୁ ଶୃଙ୍ଖଳ କହି ।
୩ । ପାଦାଙ୍ଗଦ । ତୁଳାକୋଟି । ମଞ୍ଜୀର । ନୂପୁର । ହଂସକ । ପାଦକଟକ ଏ ଛନାମ ନୂପୁରର ।
୪ । କିଙ୍କିଣୀ । କ୍ଷୁଦ୍ରଘଣ୍ଟିକା ଏ ଦୁଇନାମ କିଙ୍କିଣୀର ।
୫ । ବଲ୍କୋତ୍ପାଦକ ବସ୍ତ୍ରର ନାମକୁ ବସ୍ତ୍ରଯୋନି କହି ।
୬ । ବାଲ୍କ । କ୍ଷୌମ ଏ ଦୁଇନାମ ବଲ୍କଳନିର୍ମିତ ବସ୍ତ୍ରର ।
୭ । ଫାଲ । କାର୍ପାସ । ବାଦର ଏ ତେନିନାମ କାର୍ପାସଜାତ ବସ୍ତ୍ରର ।
୮ । କୌଷେୟ । କୃମିକୋଷୋତ୍ଥ ଏ ଦୁଇନାମ ପଟ୍ଟବସ୍ତ୍ରର ।
୯ । ରାଙ୍କବ । ମୃଗରୋମଜ ଏ ଦୁଇନାମ ମୃଗରୋମଜାତ ବସ୍ତ୍ରର ।
୧୦ । ଅନାହତ । ନିଷ୍ପ୍ରବାଣି । ତନ୍ତ୍ରକ । ନବାମ୍ବର ଏ ଚାରିନାମ ନୂତନ ବସ୍ତ୍ରର ।
୧୧ । ଧୌତବସ୍ତ୍ର ଯୁଗ୍ମକୁ ଉଦ୍ଗମନୀୟ କହି ।
୧୨ । ପତ୍ରୋର୍ଣ୍ଣ । ଧୌତକୌଶେୟ ଏ ଦୁଇନାମ ପ୍ରକ୍ଷାଳିତ ପଟ୍ଟବସ୍ତ୍ରର ।
୧୩ । ବହୁମୂଲ୍ୟ । ମହାଧନ ଏ ଦୁଇନାମ ବହୁମୂଲ୍ୟ ବସ୍ତ୍ରାଦିର ।
୧୪ । କ୍ଷୌମ । ଦୁକୂଳ ଏ ଦୁଇନାମ ସୂକ୍ଷ୍ମ ପଟ୍ଟବସ୍ତ୍ରର ।
୧୫ । ନିବୀତ । ପ୍ରାବୃତ ଏ ଦୁଇନାମ ଓଢ଼ଣିବସ୍ତ୍ରର ।

[୧] ସ୍ତ୍ରିୟାଂ ବହୁତ୍ୱେ ବସ୍ତ୍ରସ୍ୟ ଦଶାଃ ସ୍ୟୁର୍ବସ୍ତ୍ରୟୋର୍ଦ୍ୱୟୋଃ ॥
[୨] ଦୈର୍ଘ୍ୟମାୟାମ ଆରୋହ [୩] ପରିଣାହୋ ବିଶାଳତା ।
[୪] ପଟ୍ଟଚ୍ଚରଂ ଜୀର୍ଣ୍ଣବସ୍ତ୍ରଂ [୫] ସମୌ ନକ୍ତକ କର୍ପଟୌ ॥
[୬] ବସ୍ତ୍ରମାଚ୍ଛାଦନଂ ବାସଶ୍ଚେଲଂ ବସନମଂଶୁକଂ ।
[୭] ସୁଚେଲକଃ ପଟୋ ଽସ୍ତ୍ରୀ ସ୍ୟା [୮] ଦ୍ୱରଶିଃ ସ୍ଥୂଳଶାଟକଃ ॥
[୯] ନିଚୋଳଃ ପ୍ରଚ୍ଛଦପଟଃ [୧୦] ସମୌ ରଲ୍ଲକ କମ୍ବଳୌ ।
[୧୧] ଅନ୍ତରୀୟୋପସଂବ୍ୟାନ ପରିଧାନାନ୍ୟଧୋ ଽଂଶୁକେ ॥
[୧୨] ଦ୍ୱୌ ପ୍ରାବାରୋତ୍ତରାସଙ୍ଗୌ ସମୌ ବୃହତିକା ତଥା ।
ସଂବ୍ୟାନମୁତ୍ତରୀୟଂ ଚ [୧୩] ଚୋଳଃ କୂର୍ପାସକଃ ସ୍ତ୍ରିୟାଂ ।
[୧୪] ନୀଶାରଃ ସ୍ୟାତ୍ପ୍ରାବରଣେ ହିମାନିଳନିବାରଣେ ।
[୧୫] ଅର୍ଦ୍ଧୋରୁକଂ ବରସ୍ତ୍ରୀଣାଂ ସ୍ୟାଚ୍ଚଣ୍ଡାତକମଂଶୁକଂ ॥

---

୧ । ଦଶା । ବର୍ତ୍ତି ଏ ଦୁଇନାମ ବସ୍ତ୍ରଦଶୀର ।
୨ । ଦୈର୍ଘ୍ୟ । ଆୟାମ । ଆରୋହ ଏ ତିନିନାମ ଦୀର୍ଘତାର ।
୩ । ପରିଣାହ । ବିଶାଳତା ଏ ଦୁଇନାମ ଓସାରର ।
୪ । ପଟ୍ଟଚ୍ଚର । ଜୀର୍ଣ୍ଣବସ୍ତ୍ର ଏ ଦୁଇନାମ ପୁରୁଣାଲୁଗାର ।
୫ । ନକ୍ତକ । କର୍ପଟ । ଏ ଦୁଇନାମ ଖଣ୍ଡାକନାର ( କୌପୀନ କନାର ) ।
୬ । ବସ୍ତ୍ର ଆଚ୍ଛାଦନ । ବାସସ୍ । ଚେଲ । ବସନ । ଅଂଶୁକ ଏ ଛଅନାମ ସାଧାରଣବସ୍ତ୍ରର ।
୭ । ସୁଚେଲକ । ପଟ ଏ ଦୁଇନାମ ଶୋଭନ ବସ୍ତ୍ରର ।
୮ । ବରାଶି । ସ୍ଥୂଳଶାଟକ ଏ ଦୁଇନାମ ମୋଟବସ୍ତ୍ରର ।
୯ । ନିଚୋଳ । ପ୍ରଚ୍ଛଦପଟ ଏ ଦୁଇନାମ ପାଛୋଡ଼ା ବସ୍ତ୍ରର ।
୧୦ । ରଲ୍ଲକ । କମ୍ବଳ ଏ ଦୁଇନାମ କମ୍ବଳର ।
୧୧ । ଅନ୍ତରୀୟ । ଉପସଂବ୍ୟାନ । ପରିଧାନ । ଅଧୋଽଂଶୁକ ଏ ଚାରିନାମ ପରିଧେୟବସ୍ତ୍ରର
୧୨ । ପ୍ରାବାର । ଉତ୍ତରାସଙ୍ଗ । ବୃହତିକା । ସଂବ୍ୟାନ । ଉତ୍ତରୀୟ ଏ ପାଞ୍ଚନାମ ଉତ୍ତରୀର
୧୩ । ଚୋଳ । କୂର୍ପାସକ ଏ ଦୁଇନାମ କାଞ୍ଚଲାର ।
୧୪ । ଶୀତବାରଣବସ୍ତ୍ରକୁ ନୀଶାର କହି ।
୧୫ । ଶ୍ରେଷ୍ଠାସ୍ତ୍ରୀର ବସ୍ତ୍ରକୁ ଚଣ୍ଡାତକ କହି ।

[୧] ସ୍ୟାତ୍ତ୍ରିଷ୍ୱାପ୍ରପଦୀନଂ ତତ୍ ପ୍ରାପ୍ନୋତ୍ୟାପ୍ରପଦଂ ହି ଯତ୍ ।
[୨] ଅସ୍ତ୍ରୀ ବିତାନମୁଲ୍ଲୋଚେ [୩] ଦୂଷ୍ୟାଦ୍ୟଂ ବସ୍ତ୍ରବେଶ୍ମନି ॥
[୪] ପ୍ରତିସୀରା ଜବନିକା ସ୍ୟାତ୍ତିରସ୍କରିଣୀ ଚ ସା ।
[୫] ପରିକର୍ମ୍ମାଙ୍ଗ ସଂସ୍କାରଃ [୬] ସ୍ୟାନ୍ମାର୍ଷ୍ଟିର୍ମାର୍ଜ୍ଜନା ମୃଜା ॥
[୭] ଉଦ୍ୱର୍ତ୍ତନୋତ୍ସାଦନେ ଦ୍ୱେ ସମେ [୮] ଆପ୍ଲାବ ଆପ୍ଲବଃ ।
ସ୍ନାନଂ [୯] ଚର୍ଚ୍ଚା ତୁ ଚାର୍ଚ୍ଚିକ୍ୟଂ ସ୍ଥାସକୋ [୧୦] ଽଥ ପ୍ରବୋଧନଂ
ଅନୁବୋଧଃ [୧୧] ପତ୍ରଲେଖା ପତ୍ରାଙ୍ଗୁଳିରିମେ ସମେ ।
[୧୨] ତମାଲପତ୍ର ତିଲକ ଚିତ୍ରକାଣି ବିଶେଷକଂ ॥
ଦ୍ୱିତୀୟଂ ଚ ତୁରୀୟଂ ଚ ନ ସ୍ତ୍ରିୟାଂ [୧୩] ମଥ କୁଙ୍କୁମଂ ।
କାଶ୍ମୀରଜନ୍ମାଗ୍ନିଶିଖଂ ବରଂ ବାହ୍ଲୀକପୀତନେ ॥
ରକ୍ତସଙ୍କୋଚ ପିଶୁନଂ ଧୀରଲ୍ଲୋହିତ ଚନ୍ଦନଂ ।

---

୧ । ମସ୍ତକାବଧି ପାଦାଗ୍ରପର୍ଯ୍ୟନ୍ତ ଆଚ୍ଛାଦିତ ବସ୍ତ୍ରକୁ ଆପ୍ରପଦୀନ କହି ।
୨ । ବିତାନ । ଉଲ୍ଲୋଚ ଏ ଦୁଇନାମ ଚାନ୍ଦୁଅର ।
୩ । ବସ୍ତ୍ରନିର୍ମିତ ଗୃହକୁ ଦୂଷ୍ୟ କହି ।
୪ । ପ୍ରତିସୀରା । ଜବନିକା । ତିରସ୍କରିଣୀ । ଏ ତିନିନାମ ପର୍ଦ୍ଦା ଅର୍ଥାତ୍ କନାତିବାଡ଼ର ।
୫ । ପରିକର୍ମ । ଅଙ୍ଗସଂସ୍କାର ଏ ଦୁଇନାମ ଅଙ୍ଗ ନିର୍ମଳ କରିବାର ।
୬ । ମାର୍ଷ୍ଟି । ମାର୍ଜ୍ଜନା । ମୃଜା ଏ ତିନିନାମ ନିର୍ମଳ କରଣର ।
୭ । ଉଦ୍ୱର୍ତ୍ତନ । ଉତ୍ସାଦନ ଏ ଦୁଇନାମ ଉଳକଲ୍ଦ୍ୱାରା ଶରୀର ନିର୍ମଳକରିବାର ।
୮ । ଆପ୍ଲାବ । ଆପ୍ଲବ । ସ୍ନାନ ଏ ତିନିନାମ ସ୍ନାନର ।
୯ । ଚର୍ଚ୍ଚା । ଚାର୍ଚ୍ଚିକ୍ୟ । ସ୍ଥାସକ ଏ ତିନିନାମ ବସ୍ତ୍ରାଦିରେ କୁଙ୍କୁମାଦି ଛିଟାର ।
୧୦ । ପ୍ରବୋଧନ । ଅନୁବୋଧ ଏ ଦୁଇନାମ ନିଦ୍ରାଭଙ୍ଗର ।
୧୧ । ପତ୍ରଲେଖା । ପତ୍ରାଙ୍ଗୁଳି ଏ ଦୁଇନାମ ଗାଲଚିତ୍ରିତ ଲେଖାର ।
୧୨ । ତମାଳପତ୍ର । ତିଳକ । ଚିତ୍ରକ । ବିଶେଷକ ଏ ଚାରିନାମ କପାଳଚନ୍ଦନବଟନର ।
୧୩ । କୁଙ୍କୁମ । କାଶ୍ମୀରଜନ୍ମନ୍ । ଅଗ୍ନିଶିଖ । ବର । ବାହ୍ଲୀକ । ପୀତନ ।
ରକ୍ତ । ସଙ୍କୋଚ । ପିଶୁନ । ଧୀର । ଲୋହିତଚନ୍ଦନ ଏ ଏଗାରନାମ କୁଙ୍କୁମର ।

[୧] ଲାକ୍ଷା ରାକ୍ଷା ଜତୁ କ୍ଲୀବେ ଯାବୋ ଽଲକ୍ତୋ ଦ୍ରୁମାମୟଃ ॥
[୨] ଲବଙ୍ଗଂ ଦେବକୁସୁମଂ ଶ୍ରୀସଂଜ୍ଞ- [୩] ମଥ ଯାୟକଂ ।
କାଲୀୟକଂ ଚ କାଲାନୁସାର୍ଯ୍ୟଂ ଚ [୪] ଽଥ ସମାର୍ଥକଂ ॥
ବଂଶିକାଗୁରୁ ରାଜାର୍ହଂ ଲୋହଂ କ୍ରିମିଜ ଜୋଙ୍ଗକଂ ।
[୫] କାଳାଗୁର୍ବଗୁରୁଃ [୬] ସ୍ୟାତ୍ତୁ ମଙ୍ଗଲ୍ୟା ମଲ୍ଲିଗନ୍ଧି ଯତ୍ ॥
[୭] ଯକ୍ଷଧୂପଃ ସର୍ଜ୍ଜରସୋ ଽରାଳ ସର୍ବରସାବପି ।
ବହୁରୂପୋ ଽପ୍ୟ [୮] ଽଥ ବୃକଧୂପ କୃତ୍ରିମଧୂପକୌ ॥
[୯] ତୁରୁଷ୍କଃ ପିଣ୍ଡକଃ ସିହ୍ଲୋ ଯାବନୋ ଽପ୍ୟ [୧୦] ଽଥ ପାୟସଃ
ଶ୍ରୀବାସୋ ବୃକଧୂପୋ ଽପି ଶ୍ରୀବେଷ୍ଟ ସରଳଦ୍ରବୌ ॥
[୧୧] ମୃଗନାଭିର୍ମୃଗମଦଃ କସ୍ତୂରୀ ଚ [୧୨] ଥ କୋଲକଂ ।
କକ୍କୋଲକଂ କୋଶଫଲ [୧୩] ମଥ କର୍ପୂର ମସ୍ତ୍ରିୟାଂ ॥
ଘନସାରଶ୍ଚନ୍ଦ୍ରସଂଜ୍ଞଃ ସିତାଭ୍ରୋ ହିମବାଲୁକା ।

---

୧ । ଲକ୍ଷା । ରକ୍ଷା । ଜତୁ । ଯାବ । ଅଲକ୍ତ । ଦ୍ରୁମାମୟ ଏ ଛନାମ ଅଳତାର ।
୨ । ଲବଙ୍ଗ । ଦେବକୁସୁମ ଏ ଦୁଇନାମ ଲବଙ୍ଗର ।
୩ । ଯାୟକ । କାଳୀୟକ । କାଲାନୁସାର୍ଯ୍ୟ ଏ ତିନିନାମ ପୀତକାଠର ।
୪ । ବଂଶିକ । ଅଗୁରୁ । ରାଜାର୍ହ । ଲୋହ । କ୍ରିମିଜ । ଜୋଙ୍ଗକ ଏ ଛନାମ ଅଗୁରୁଚନ୍ଦନର ।
୫ । କାଳାଗୁରୁ । ଅଗୁରୁ ଏ ଦୁଇନାମ କାଳାଗୁରୁର ।
୬ । ମଲ୍ଲୀକାଗନ୍ଧଯୁକ୍ତ କାଳାଗୁରୁର୍ ମଙ୍ଗଲ୍ୟା କହି ।
୭ । ଯକ୍ଷଧୂପ । ସର୍ଜ୍ଜରସ । ଅରାଳ । ସର୍ବରସ । ବହୁରୂପ ଏ ପାଞ୍ଚନାମ ଝୁଣାର ।
୮ । ବୃକଧୂପ । କୃତ୍ରିମଧୂପକ ଏ ଦୁଇନାମ ଷୋଡଶ ଅଙ୍ଗଧୂପର ।
୯ । ତୁରୁଷ୍କ । ପିଣ୍ଡକ । ସିହ୍ଲ । ଯାବନ ଏ ଚାରିନାମ ଶିଲାରସର ।
୧୦ । ପାୟସ । ଶ୍ରୀବାସ । ବୃକଧୂପ । ଶ୍ରୀବେଷ୍ଟ । ସରଳଦ୍ରବ ଏ ପାଞ୍ଚନାମ ଟାର୍ପିନ ତେଲର ।
୧୧ । ମୃଗନାଭି । ମୃଗମଦ । କସ୍ତୂରୀ ଏ ତିନିନାମ ମୃଗନାଭି କସ୍ତୂରୀର ।
୧୨ । କୋଲକ । କକ୍କୋଲକ । କୋଷଫଳ ଏ ତିନିନାମ କଙ୍କୋଲ ଫଳର ।
୧୩ । କର୍ପୂର । ଘନସାର । ସିତାଭ୍ର । ଚନ୍ଦ୍ର । ହିମବାଲୁକା ଏ ପାଞ୍ଚନାମ କର୍ପୂରର ।

[୧] ଗନ୍ଧସାରୋ ମଲୟଜୋ ଭଦ୍ରଶ୍ରୀଚନ୍ଦନୋ ଽସ୍ତ୍ରିୟାଂ ॥
[୨] ତୈଲପର୍ଣ୍ଣିକ ଗୋଶୀର୍ଷେ ହରିଚନ୍ଦନ ମସ୍ତ୍ରିୟାଂ ।
[୩] ତିଲପର୍ଣ୍ଣୀ ତୁ ପତ୍ରାଙ୍ଗଂ ରଞ୍ଜନଂ ରକ୍ତଚନ୍ଦନଂ ॥
କୁଚନ୍ଦନଂ ଚ [୪] ଥ ଜାତୀକୋଷ ଜାତୀଫଲେ ସମେ ।
[୫] କର୍ପୂ ରାଗୁରୁକସ୍ତୂ ରୀ କକ୍କୋଲୈ ର୍ୟକ୍ଷକର୍ଦ୍ଦମଃ ॥
[୬] ଗାତ୍ରାନୁଲେପନୀ ବର୍ତ୍ତିର୍ବର୍ଣ୍ଣକଂ ସ୍ୟାଦ୍ବିଲେପନଂ
[୭] ଚୂର୍ଣ୍ଣାନି ବାସଯୋଗାଃ ସ୍ୟୁ [୮] ର୍ଭାବିତଂ ବାସିତଂ ତ୍ରିଷୁ ॥
[୯] ସଂସ୍କାରୋ ଗନ୍ଧମାଲ୍ୟାଦ୍ୟୈ ର୍ୟଃ ସ୍ୟାତ୍ତଦଧିବାସନଂ ।
[୧୦] ମାଲ୍ୟଂ ମାଲା ସ୍ରଜୌ ମୂର୍ଦ୍ଧ୍ନି [୧୧] କେଶମଧ୍ୟେ ତୁ ଗର୍ଭକଃ ॥
[୧୨] ପ୍ରଭ୍ରଷ୍ଟକଂ ଶିଖାଲମ୍ବ [୧୩] ପୁରୋନ୍ୟସ୍ତଂ ଲଲାମକଂ ।

---

୧ । ଗନ୍ଧସାର । ମଲୟଜ । ଭଦ୍ରଶ୍ରୀ । ଚନ୍ଦନ ଏ ଚାରିନାମ ଚନ୍ଦନର ।
୨ । ତୈଲପର୍ଣ୍ଣିକ । ଗୋଶୀର୍ଷ । ହରିଚନ୍ଦନ ଏ ତିନିନାମ ଚନ୍ଦନବିଶେଷର ।
୩ । ତିଳପର୍ଣ୍ଣୀ । ପତ୍ରାଙ୍ଗ । ରଞ୍ଜନ । ରକ୍ତଚନ୍ଦନ । କୁଚନ୍ଦନ ଏ ପାଞ୍ଚନାମ ରକ୍ତଚନ୍ଦନର ।
୪ । ଜାତିକୋଷ । ଜାତିଫଳ ଏ ଦୁଇନାମ ଯାଇଫଳର ।
୫ । ମିଶ୍ରିତ କର୍ପୂର ଅଗୁରୁକସ୍ତୁରୀ କକ୍କୋଳର ନାମକୁ ଯକ୍ଷକର୍ଦ୍ଦମ କହି ।
୬ । ଗାତ୍ରାନୁଲେପନୀ । ବର୍ତ୍ତି । ବର୍ଣ୍ଣକ । ବିଲେପନ ଏ ଚାରିନାମ ଗାତ୍ରଲେପନଦ୍ରବ୍ୟର ।
୭ । ଚୂର୍ଣ୍ଣ । ବାସଯୋଗ ଏ ଦୁଇନାମ ସୁଗନ୍ଧ ଗୁଣ୍ଡୀର ।
୮ । ଭାବିତ । ବାସିତ ଏ ଦୁଇନାମ ଗନ୍ଧବାସ ବସ୍ତୁର ।
୯ । ଗନ୍ଧମାଲ୍ୟାଦିଦ୍ୱାରା ସଂସ୍କାର ନାମକୁ ଅଧିବାସନ କହି ।
୧୦ । ମାଲ୍ୟ । ମାଳା । ସ୍ରକ ଏ ତିନିନାମ ମାଳାର ।
୧୧ । କେଶମଧ୍ୟସ୍ଥିତ ମାଲ୍ୟକୁ ଗର୍ଭକ କହି ।
୧୨ । ଶିଖାଲମ୍ବିତ ମାଳାର ନାମକୁ ପ୍ରଭ୍ରଷ୍ଟକ କହି ।
୧୩ । ସମ୍ମୁଖ ନ୍ୟସ୍ତ ଶିଖାଲମ୍ବିତ ମାଳାର ନାମକୁ ଲଲାମକ କହି ।

[୧] ପ୍ରାଲମ୍ବମୃଜୁଲମ୍ବି ସ୍ୟାତ୍ କଣ୍ଠା [୨] ଦ୍ୱୈକକ୍ଷକଂ ତୁ ତତ୍ ॥
ଯତ୍ତିର୍ଯ୍ୟକ୍ କ୍ଷିପ୍ତମୁରସି [୩] ଶିଖାସ୍ୱାପୀଡ଼ ଶେଖରୌ ।
[୪] ରଚନା ସ୍ୟାତ୍ ପରିସ୍ପନ୍ଦ [୫] ଆଭୋଗଃ ପରିପୂର୍ଣ୍ଣତା ॥
[୬] ଉପଧାନଂ ତୂପବର୍ହଃ [୭] ଶଯ୍ୟାୟାଂ ଶୟନୀୟବତ୍ ।
ଶୟନଂ [୮] ମଞ୍ଚ ପର୍ଯ୍ୟଙ୍କଃ ପଲ୍ୟଙ୍କାଃ ଖଟ୍ୱୟା ସମାଃ ॥
[୯] ଗେଣ୍ଡୁକଃ କନ୍ଦୁକୋ [୧୦] ଦୀପଃ ପ୍ରଦୀପଃ [୧୧] ପୀଠମାସନଂ
[୧୨] ସମୁଦ୍ଗକଃ ସମ୍ପୁଟକଃ [୧୩] ପ୍ରତିଗ୍ରାହଃ ପତଦ୍ଗ୍ରହଃ ॥
[୧୪] ପ୍ରସାଧନୀ କଙ୍କତିକା [୧୫] ପିଷ୍ଟାତଃ ପଟବାସକଃ ।
[୧୬] ଦର୍ପଣେ ମୁକୁରାଦର୍ଶୌ [୧୭] ବ୍ୟଜନଂ ତାଲବୃନ୍ତକଂ ॥

---

୧ । ସରଳଭାବେ ଲମ୍ବିତ ମାଳାର ନାମକୁ ପ୍ରାଲମ୍ବ କହି ।
୨ । କଣ୍ଠଠାରୁ ବକ୍ଷସ୍ଥଳ ପର୍ଯ୍ୟନ୍ତ ଲମ୍ବିତ ମାଳାର ନାମ ବୈକକ୍ଷକ କହି ।
୩ । ଆପୀଡ଼ । ଶେଖର ଏ ଦୁଇନାମ ଶିଖାବେଷ୍ଟିତ ମାଳାର ।
୪ । ରଚନା । ପରିସ୍ପନ୍ଦ ଏ ଦୁଇନାମ କେଶରଚନାର ।
୫ । ଆଭୋଗ । ପରିପୂର୍ଣ୍ଣତା ଏ ଦୁଇନାମ ପରିପୂର୍ଣ୍ଣତାର ।
୬ । ଉପଧାନ । ଉପବର୍ହ ଏ ଦୁଇନାମ ତକିଆର ।
୭ । ଶଯ୍ୟା । ଶୟନୀୟ । ଶୟନ ଏ ତିନିନାମ ଶଯ୍ୟାର ।
୮ । ମଞ୍ଚ । ପର୍ଯ୍ୟଙ୍କ । ପଲ୍ୟଙ୍କ । ଖଟ୍ୱା ଏ ଚାରିନାମ ଖଟର ।
୯ । ଗେଣ୍ଡୁକ । କନ୍ଦୁକ ଏ ଦୁଇନାମ କ୍ରୀଡ଼ାର୍ଥ ଗୋଲାକାର ଦ୍ରବ୍ୟର ।
୧୦ । ଦୀପ । ପ୍ରଦୀପ ଏ ଦୁଇନାମ ପ୍ରଦୀପର ।
୧୧ । ପୀଠ । ଆସନ ଏ ଦୁଇନାମ ପିଢ଼ା ଅର୍ଥାତ୍ କାଷ୍ଠଆସନର ।
୧୨ । ସମୁଦ୍ଗକ । ସମ୍ପୁଟକ ଏ ଦୁଇନାମ ଫରୁଆର ।
୧୩ । ପ୍ରତିଗ୍ରାହ । ପତଦ୍ଗ୍ରହ ଏ ଦୁଇନାମ ପିକଦାନୀର ।
୧୪ । ପ୍ରସାଧନୀ । କଙ୍କତିକା ଏ ଦୁଇନାମ ପାନିଆର ।
୧୫ । ପିଷ୍ଟାତ । ପଟବାସକ ଏ ଦୁଇନାମ ଅବିର ଚୂର୍ଣ୍ଣର ।
୧୬ । ଦର୍ପଣ । ମୁକୁର । ଆଦର୍ଶ ଏ ତିନିନାମ ଆରସିର ।
୧୭ । ବ୍ୟଜନ । ତାଲବୃନ୍ତକ ଏ ଦୁଇନାମ ତାଳପତ୍ର ପଙ୍ଖାର ।

## ବ୍ରହ୍ମବର୍ଗଃ ।

[୧] ସନ୍ତତିର୍ଗୋତ୍ର ଜନନକୁଲାନ୍ୟଭିଜନାନ୍ୱୟୌ ।
ବଂଶୋଽନ୍ୱବାୟଃ ସନ୍ତାନୋ [୨] ବର୍ଣ୍ଣାଃ ସ୍ୟୁର୍ବ୍ରାହ୍ମଣାଦୟଃ ॥
[୩] ରାଜବୀଜୀ ରାଜବଂଶ୍ୟୋ [୪] ବୀଜ୍ୟସ୍ତୁ କୁଲସମ୍ଭବଃ ।
[୫] ମହାକୁଲ କୁଲୀନାର୍ଯ୍ୟ ସଭ୍ୟ ସଜ୍ଜନ ସାଧବଃ ॥
[୬] ବ୍ରହ୍ମଚାରୀ ଗୃହୀ ବାନପ୍ରସ୍ଥୋ ଭିକ୍ଷୁଶ୍ଚତୁଷ୍ଟୟେ ।
[୭] ଆଶ୍ରମୋଽସ୍ତ୍ରୀ [୮] ଦ୍ୱିଜାତ୍ୟଗ୍ରଜନ୍ମ ଭୂଦେବ ବାଡ଼ବାଃ ॥
ବିପ୍ରଶ୍ଚ ବ୍ରାହ୍ମଣୋ [୯] ଽସୌ ଷଟ୍‌କର୍ମା ଯାଗାଦିଭିର୍ଯୁତଃ ।
[୧୦] ବିଦ୍ୱାନ୍ ବିପଶ୍ଚିଦ୍ଦୋଷଜ୍ଞଃ ସନ୍ ସୁଧୀଃ କୋବିଦୋ ବୁଧଃ ॥
ଧୀରୋ ମନୀଷୀ ଜ୍ଞଃ ପ୍ରାଜ୍ଞଃ ସଙ୍ଖ୍ୟାବାନ୍ ପଣ୍ଡିତଃ କବିଃ ।
ଧୀମାନ୍ ସୂରିଃ କୃତୀ କୃଷ୍ଟିର୍ଲବ୍ଧବର୍ଣ୍ଣୋ ବିଚକ୍ଷଣଃ ॥
ଦୂରଦର୍ଶୀ ଦୀର୍ଘଦର୍ଶୀ [୧୧] ଶ୍ରୋତ୍ରିୟଚ୍ଛାନ୍ଦସୌ ସମୌ ।

---

୧ । ସନ୍ତତି । ଗୋତ୍ର । ଜନନ । କୁଳ । ଅଭିଜନ । ଅନ୍ୱୟ । ବଂଶ । ଅନ୍ୱବାୟ । ସନ୍ତାନ ଏ ନବନାମ ବଂଶର । ୨ । ବ୍ରାହ୍ମଣାଦିର ନାମକୁ ବର୍ଣ୍ଣ କହି ।
୩ । ରାଜବୀଜିନ୍ । ରାଜବଂଶ୍ୟ ଏ ଦୁଇନାମ ରାଜବଂଶୋଦ୍ଭବ ବ୍ୟକ୍ତିର ।
୪ । ବୀଜ୍ୟ । କୁଲସମ୍ଭବ ଏ ଦୁଇନାମ ସତ୍କୁଳୋଦ୍ଭବ ବ୍ୟକ୍ତିର ।
୫ । ମହାକୁଲ । କୁଲୀନ । ଆର୍ଯ୍ୟ । ସଭ୍ୟ । ସଜ୍ଜନ । ସାଧୁ ଏ ଛନାମ ମହାକୁଳୋଦ୍ଭବ ବ୍ୟକ୍ତିର ।
୬ । ବ୍ରହ୍ମଚାରିନ୍ । ଗୃହିନ୍ । ବାନପ୍ରସ୍ଥ । ଭିକ୍ଷୁ ଏ ଚଉନାମ ଚଉଆଶ୍ରମ ନିବାସିଙ୍କର ।
୭ । ବ୍ରହ୍ମଚର୍ଯ୍ୟାଦ୍ୟବସ୍ଥା ନାମକୁ ଆଶ୍ରମ କହି ।
୮ । ଦ୍ୱିଜାତି । ଅଗ୍ରଜନ୍ମନ୍ । ଭୂଦେବ । ବାଡ଼ବ । ବିପ୍ର । ବ୍ରାହ୍ମଣ ଏ ଛନାମ ।
୯ । ଯାଗାଦିଯୁକ୍ତ ବ୍ରାହ୍ମଣର ନାମକୁ ଷଟ୍‌କର୍ମନ୍ କହି । [ ବ୍ରାହ୍ମଣର ।
୧୦ । ବିଦ୍ୱସ୍ । ବିପଶ୍ଚିତ୍ । ଦୋଷଜ୍ଞ । ସତ୍ । ସୁଧୀ । କୋବିଦ । ବୁଧ । ଧୀର । ମନୀଷିନ୍ । ଜ୍ଞ । ପ୍ରାଜ୍ଞ । ସଙ୍ଖ୍ୟାବତ୍ । ପଣ୍ଡିତ । କବି । ଧୀମତ୍ । ସୂରି । କୃତିନ୍ । କୃଷ୍ଟି । ଲବ୍ଧବର୍ଣ୍ଣ । ବିଚକ୍ଷଣ । ଦୂରଦର୍ଶିନ୍ । ଦୀର୍ଘଦର୍ଶିନ୍ ଏ ବାଇଶନାମ ପଣ୍ଡିତଙ୍କର ।
୧୧ । ଶ୍ରୋତ୍ରିୟ । ଛାନ୍ଦସ ଏ ଦୁଇନାମ ବେଦାଧ୍ୟୟନକାରୀ ବ୍ରାହ୍ମଣର ।

[୧] ଉପାଧ୍ୟାୟୋଽଧ୍ୟାପକୋ [୨] ଽଥ ସ୍ୟାନ୍ନିଷେକାଦିକୃଦ୍ଗୁରୁଃ
[୩] ମନ୍ତ୍ରବ୍ୟାଖ୍ୟାକୃଦାଚାର୍ଯ୍ୟ [୪] ଆଦେଷ୍ଟା ତ୍ୱଧ୍ୱରେ ବ୍ରତୀ ।
ଯଷ୍ଟା ଚ ଯଜମାନଶ୍ଚ [୫] ସ ସୋମବତି ଦୀକ୍ଷିତଃ ।
[୬] ଇଜ୍ୟାଶୀଲୋ ଯାୟଜୂକୋ [୭] ଯଜ୍ୱା ତୁ ବିଧିନେଷ୍ଟବାନ୍ ।
[୮] ସ ଗୀଷ୍ପତୀଷ୍ଟ୍ୟା ସ୍ଥପତିଃ [୯] ସୋମପୀତୀ ତୁ ସୋମପାଃ ॥
[୧୦] ସର୍ବ୍ବବେଦାଃ ସ ଯେନେଷ୍ଟୋ ଯାଗଃ ସର୍ବ୍ବସ୍ୱଦକ୍ଷିଣଃ ।
[୧୧] ଅନୂଚାନଃ ପ୍ରବଚନେ ସାଙ୍ଗେଽଧୀତୀ [୧୨] ଗୁରୋସ୍ତୁ ଯଃ ।
ଲବ୍ଧାନୁଜ୍ଞଃ ସମାବୃତ୍ତଃ [୧୩] ସୁତ୍ୱା ତ୍ୱଭିଷବେ କୃତେ ।
[୧୪] ଛାତ୍ରାନ୍ତେବାସିନୌ ଶିଷ୍ୟେ [୧୫] ଶୈକ୍ଷାଃ ପ୍ରାଥମକଳ୍ପିକାଃ ॥
[୧୬] ଏକବ୍ରହ୍ମବ୍ରତାଚାରା ମିଥଃ ସବ୍ରହ୍ମଚାରିଣଃ ।

---

୧ । ଉପାଧ୍ୟାୟ । ଅଧ୍ୟାପକ ଏ ଦୁଇନାମ ଶିକ୍ଷକର ।
୨ । ଗର୍ଭାଧାନାଦି ସଂସ୍କାରକର୍ତ୍ତାର ନାମକୁ ଗୁରୁ କହି ।
୩ । ବେଦମନ୍ତ୍ରର ଅର୍ଥକର୍ତ୍ତାକୁ ଆଚାର୍ଯ୍ୟ କହି ।
୪ । ବ୍ରତୀନ୍ । ଯଷ୍ଟୃ । ଯଜମାନ ଏ ତିନିନାମ ଯାଗ ଆଦି କର୍ତ୍ତାର ।
୫ । ଯାଗସଙ୍କଳ୍ପକର୍ତ୍ତାର ନାମକୁ ଦୀକ୍ଷିତ କହି ।
୬ । ଇଜ୍ୟାଶୀଳ । ଯାୟଜୂକ ଏ ଦୁଇନାମ ଯାଗଶୀଳ ବ୍ୟକ୍ତିର ।
୭ । ବିଧିପୂର୍ବ୍ବକ ଯାଗବାନ୍ ବ୍ୟକ୍ତିକି ଯଜ୍ୱନ୍ କହି ।
୮ । ବାର୍ହସ୍ପତ୍ୟ ନାମକ ଯାଗକର୍ତ୍ତାକୁ ସ୍ଥପତି କହି ।
୯ । ସୋମପ । ସୋମପୀତିନ୍ ଏ ଦୁଇନାମ ସୋମଲତା ପାନକର୍ତ୍ତାର ।
୧୦ । ସର୍ବ୍ବସ୍ୱଦକ୍ଷିଣ ଯାଗକର୍ତ୍ତାକୁ ସର୍ବ୍ବବେଦସ୍ କହି ।
୧୧ । ସାଙ୍ଗବେଦ ପାଠକକୁ ଅନୂଚାନ କହି ।
୧୨ । ସାଙ୍ଗବେଦ ପାଠାନନ୍ତର ଗୁରୁଠାରୁ ଲବ୍ଧାନୁଜ୍ଞ ବ୍ୟକ୍ତିକୁ ସମାବୃତ୍ତ କହି ।
୧୩ । ଯାଗସମ୍ବନ୍ଧୀୟ ସ୍ନାନକର୍ତ୍ତାର ନାମକୁ ସୁତ୍ୱନ୍ କହି ।
୧୪ । ଛାତ୍ର । ଅନ୍ତେବାସିନ୍ । ଶିଷ୍ୟ ଏ ତିନିନାମ ଶିଷ୍ୟର ।
୧୫ । ଶୈକ୍ଷ । ପ୍ରାଥମକଳ୍ପିକ ଏ ଦୁଇନାମ ପ୍ରଥମ ବେଦ ପାଠପ୍ରବୃତ୍ତ ବ୍ୟକ୍ତିର ।
୧୬ । ଏକ ଗୁରୁ ନିକଟରେ ବେଦାଦି ପାଠକ ବ୍ୟକ୍ତିକି ସବ୍ରହ୍ମଚାରିନ୍ କହି ।

[୧] ସତୀର୍ଥ୍ୟାସ୍ତ୍ୱେକଗୁରବ [୨] ଶ୍ଚିତବାନଗ୍ନିମଗ୍ନି ଚିତ୍ ॥
[୩] ପାରମ୍ପର୍ଯୋପଦେଶେ ସ୍ୟାଦୈତିହ୍ୟମିତିହାବ୍ୟୟଂ ।
[୪] ଉପଜ୍ଞା ଜ୍ଞାନମାଦ୍ୟଂ ସ୍ୟାତ୍ [୫] ଜ୍ଞାତ୍ୱାରମ୍ଭ ଉପକ୍ରମଃ ॥
[୬] ଯଜ୍ଞଃ ସବୋ ଽଧ୍ୱରୋ ଯାଗଃ ସପ୍ତତନ୍ତୁ ର୍ମଖଃ କ୍ରତୁଃ ।
[୭] ପାଠୋ ହୋମଶ୍ଚାତିଥୀନାଂ ସପର୍ଯ୍ୟା ତର୍ପଣଂ ବଳିଃ ॥
ଏତେ ପଞ୍ଚମହାଯଜ୍ଞା ବ୍ରହ୍ମଯଜ୍ଞାଦି ନାମକାଃ ।
[୮] ସମଜ୍ୟା ପରିଷଦ୍ଗୋଷ୍ଠୀ ସଭା ସମିତି ସଂସଦଃ ॥
ଆସ୍ଥାନୀ କ୍ଲୀବମାସ୍ଥାନଂ ସ୍ତ୍ରୀନପୁଂସକୟୋଃ ସଦଃ ।
[୯] ପ୍ରାଗ୍‌ବଂଶଃ ପ୍ରାଗ୍ଘବିର୍ଗେହାତ୍ [୧୦] ସଦସ୍ୟା ବିଧିଦର୍ଶିନଃ ॥
[୧୧] ସଭାସଦଃ ସଭାସ୍ତାରାଃ ସଭ୍ୟାଃ ସାମାଜିକାଶ୍ଚ ତେ ।
[୧୨।୧୩।୧୪] ଅଧ୍ୱର୍ଯ୍ୟୂଦ୍ଗାତୃ ହୋତାରୋ ଯଜୁଃ ସାମର୍ଗ୍‌ବିଦଃ କ୍ରମାତ୍

---

୧ । ସତୀର୍ଥ । ଏକଗୁରୁ ଏ ଦୁଇନାମ ଏକଗୁରୁଙ୍କଠାରୁ ଅଧ୍ୟାୟନକରିଥିବା ଛାତ୍ରଙ୍କର ।
୨ । ସାଗ୍ନିକ ବ୍ରାହ୍ମଣଙ୍କୁ ଅଗ୍ନିଚିତ୍ କହି ।
୩ । ଐତିହ୍ୟ । ଇତିହା ଏ ଦୁଇନାମ ପରମ୍ପର ଉପଦେଶର ।
୪ । ଉପଦେଶନୋ ପ୍ରଥମଜ୍ଞାନକୁ ଉପଜ୍ଞା କହି ।
୫ । ଜ୍ଞାନପୂର୍ବକ ଆରମ୍ଭର ନାମ ଉପକ୍ରମ ।
୬ । ଯଜ୍ଞ । ସବ । ଅଧ୍ୱର । ଯାଗ । ସପ୍ତତନ୍ତୁ । ମଖ । କ୍ରତୁ ଏ ସାତନାମ ଯାଗର ।
୭ । ବେଦପାଠ । ହୋମ । ଅତିଥିସେବା । ପିତୃତର୍ପଣ । ବଳି । ବୈଶ୍ୱଦେବ ଏ ପାଞ୍ଚକର୍ମକୁ ମହାଯଜ୍ଞ କହି ।
୮ । ସମଜ୍ୟା । ପରିଷଦ । ଗୋଷ୍ଠୀ । ସଭା । ସମିତି । ସଂସଦ୍ । ଆସ୍ଥାନୀ । ଆସ୍ଥାନ । ସଦସ୍ ଏ ନବନାମ ସଭାର ।
୯ । ହୋମଗୃହର ପୂର୍ବଦିଗସ୍ଥ ଗୃହକୁ ପ୍ରାଗ୍‌ବଂଶ କହି ।
୧୦ । ସଦସ୍ୟ । ବିଧିଦର୍ଶିନ୍ ଏ ଦୁଇନାମ ସଦସ୍ୟର ।
୧୧ । ସଭାସଦ । ସଭାସ୍ତାର । ସଭ୍ୟ । ସାମାଜିକ ଏ ଚାରିନାମ ସଭାସଦ୍ ବ୍ୟକ୍ତିର ॥
୧୨ । ଯଜୁର୍ବେଦଜ୍ଞାତାକୁ ଅଧ୍ୱର୍ଯ୍ୟୁ କହି ।
୧୩ । ସାମବେଦଜ୍ଞାତାକୁ ଉଦ୍ଗାତୃ କହି ।
୧୪ । ଋଗ୍ବେଦଜ୍ଞାତାକୁ ହୋତୃ କହି ।

[୧] ଅଗ୍ନୀଧ୍ରାଦ୍ୟା ଧନୈର୍ବାର୍ଯ୍ୟା ଋତ୍ୱିଜୋ ଯାଜକାଶ୍ଚ ତେ ।
[୨] ବେଦିଃ ପରିଷ୍କୃତା ଭୂମିଃ [୩] ସମେ ସ୍ଥଣ୍ଡିଳ ଚତ୍ୱରେ ॥
[୪] ଚଷାଲୋ ଯୂପକଟକଃ [୫] କୁମ୍ବା ସୁଗହନାବୃତିଃ ।
[୬] ଯୂପାଗ୍ରଂ ତର୍ମ [୭] ନିର୍ମନ୍ଥ୍ୟ ଦାରୁଣି ତ୍ୱରଣିର୍ଦ୍ୱୟୋଃ ॥
[୮।୯।୧୦] ଦକ୍ଷିଣାଗ୍ନି ର୍ଗାର୍ହପତ୍ୟାହବନୀୟୌ ତ୍ରୟୋଽଗ୍ନୟଃ ।
[୧୧] ଅଗ୍ନିତ୍ରୟମିଦଂ ତ୍ରେତା [୧୨] ପ୍ରଣୀତଃ ସଂସ୍କୃତୋଽନଳଃ ॥
[୧୩] ସମୂହ୍ୟଃ ପରିଚାଯ୍ୟୋପଚାଯ୍ୟାବଗ୍ନୌ ପ୍ରୟୋଗିଣଃ ।
[୧୪] ଯୋ ଗାର୍ହପତ୍ୟାଦାନୀୟ ଦକ୍ଷିଣାଗ୍ନିଃ ପ୍ରଣୀୟତେ ॥
ତସ୍ମିନ୍ନାନାଯ୍ୟୋ [୧୫] ଽଥାଗ୍ନାୟୀ ସ୍ୱାହା ଚ ହୁତଭୁକ୍ପ୍ରିୟା ।
[୧୬] ଋକ୍ ସାମିଧେନୀ ଧାଯ୍ୟା ଚ ଯା ସ୍ୟାଦଗ୍ନି ସମିନ୍ଧନେ ।

---

୧ । ଋତ୍ୱିକ । ଯାଜକ ଏ ଦୁଇନାମ ପୁରୋହିତର
୨ । ଯଜ୍ଞନିମିତ୍ତ ପରିଷ୍କୃତ ଭୂମିକି ବେଦୀ କହନ୍ତି ।
୩ । ସ୍ଥଣ୍ଡିଳ । ଚତ୍ୱର ଏ ଦୁଇନାମ ଯଜ୍ଞନିମିତ୍ତ ସଂସ୍କୃତ ଭୂମିର ।
୪ । ଚଷାଳ । ଯୂପକଟକ ଏ ଦୁଇନାମ ଯୂପ ଅଗ୍ରସ୍ଥିତ ବଳୟାକୃତ କାଷ୍ଠର ।
୫ । ଯଜ୍ଞସ୍ଥାନର ବେଷ୍ଟନକୁ କୁମ୍ବା କହନ୍ତି ।
୬ । ଯୂପାଗ୍ର । ତର୍ମ ଏ ଦୁଇନାମ ଯୂପାଗ୍ରର ।
୭ । ଅଗ୍ନି ଉଠାଇବା କାଷ୍ଠକୁ ଅରଣି କହନ୍ତି ।
୮ । ଦକ୍ଷିଣଦିଗ ଅଗ୍ନିକି ଦକ୍ଷିଣାଗ୍ନି କହନ୍ତି ।
୯ । ଗୃହସ୍ଥର ଅଗ୍ନିକି ଗାର୍ହପତ୍ୟ କହନ୍ତି ।
୧୦ । ହୋମ ନିମିତ୍ତ ସଂସ୍କୃତ ଅଗ୍ନିକି ଆହବନୀୟ କହନ୍ତି ।
୧୧ । ଉକ୍ତ ତିନି ଅଗ୍ନିକି ତ୍ରେତା କହନ୍ତି ।
୧୨ । ସଂସ୍କୃତ ଅଗ୍ନିକି ପ୍ରଣୀତ କହନ୍ତି ।
୧୩ । ସମୂହ୍ୟ । ପରିଚାଯ୍ୟ । ଉପଚାଯ୍ୟ ଏ ତିନିନାମ ଯଜ୍ଞୀୟ ଅଗ୍ନି ବିଶେଷର ।
୧୪ । ଗାର୍ହପତ୍ୟରୁ ଆନୟନ ପୂର୍ବକ ପ୍ରଣୀତ ଦକ୍ଷିଣାଗ୍ନିକି ଆନାଯ୍ୟ କହନ୍ତି ।
୧୫ । ଅଗ୍ନାୟୀ । ସ୍ୱାହା । ହୁତଭୁକ୍ପ୍ରିୟା ଏ ତିନିନାମ ଅଗ୍ନିଙ୍କ ଭାର୍ଯ୍ୟାର ।
୧୬ । ସାମିଧେନି । ଧାଯ୍ୟା ଏ ଦୁଇନାମ ଯଜ୍ଞାଗ୍ନି ଜ୍ୱଳନନିମିତ୍ତ ମନ୍ତ୍ରର ।

[୧] ଗାୟତ୍ରୀପ୍ରମୁଖଂ ଛନ୍ଦୋ [୨] ହବ୍ୟପାକେ ଚରୁଃ ପୁମାନ୍ ।
[୩] ଆମିକ୍ଷା ସା ଶୃତୋଷ୍ଣେ ଯା କ୍ଷୀରେ ସ୍ୟାଦ୍ଦଧିଯୋଗତଃ ॥
[୪] ଧବିତ୍ରଂ ବ୍ୟଜନଂ ତଦ୍ୟଦ୍ରଚିତଂ ମୃଗଚର୍ମଣା ।
[୫] ପୃଷଦାଜ୍ୟଂ ସଦଧ୍ୟାଜ୍ୟେ [୬] ପରମାନ୍ନଂ ତୁ ପାୟସଃ ॥
[୭।୮] ହବ୍ୟ କବ୍ୟେ ଦୈବପିତ୍ର୍ୟେ ଅନ୍ନେ [୯] ପାତ୍ରଂ ସ୍ରୁବାଦିକଂ ।
ଧ୍ରୁବୋପଭୃଜ୍ଜୁହୂର୍ନା ତୁ ସ୍ରୁବୋ ଭେଦାଃ ସ୍ରୁଚଃ ସ୍ତ୍ରିୟଃ ॥
[୧୦] ଉପାକୃତଃ ପଶୁରସୌ ଯୋଽଭିମନ୍ତ୍ର୍ୟ କ୍ରତୌ ହତଃ ।
[୧୧] ପରମ୍ପରାକଂ ଶମନଂ ପ୍ରୋକ୍ଷଣଂ ଚ ବଧାର୍ଥକଂ ॥
[୧୨] ବାଚ୍ୟଲିଙ୍ଗାଃ ପ୍ରମୀତୋପସମ୍ପନ୍ନ ପ୍ରୋକ୍ଷିତାହତେ ।
[୧୩] ସାନ୍ନାଯ୍ୟଂ ହବି [୧୪] ଅଗ୍ନୌ ତୁ ହୁତଂ ତ୍ରିଷୁ ବଷଟ୍କୃତଂ ॥

---

୧ । ଗାୟତ୍ର୍ୟାଦି ଛନ୍ଦକୁ ଛନ୍ଦସ୍ କହି ।
୨ । ହୋମ ନିମନ୍ତେ ପକ୍ୱ ଅନ୍ନକୁ ଚରୁ କହି ।
୩ । ଛେନାକୁ ଆମିକ୍ଷା କହି ।
୪ । ଅଗ୍ନି ଜ୍ୱଳନାର୍ଥ ଜନ୍ତାକୁ ଧୂବେ କହି ।
୫ । ଦଧିଯୁକ୍ତ ଘୃତକୁ ପୃଷଦାଜ୍ୟ କହି ।
୬ । ପରମାନ୍ନ । ପାୟସ ଏ ଦୁଇନାମ ପାୟସର ।
୭ । ଦେବତାଙ୍କ ଅନ୍ନକୁ ହବ୍ୟ କହି ।
୮ । ପିତୃଲୋକଙ୍କ ଅନ୍ନକୁ କବ୍ୟ କହି ।
୯ । ପାତ୍ର । ଯଥା-ଉପଭୃତ୍ । ଜୁହୂ । ଧ୍ରୁବ । ସ୍ରୁବ ଏ ପାତ୍ରନାମ ଯଜ୍ଞପାତ୍ରର ।
୧୦ । ଯଜ୍ଞରେ ମନ୍ତ୍ରପୂତ ପଶୁକୁ ଉପାକୃତ କହି ।
୧୧ । ପରମ୍ପରାକ । ଶମନ ଏ ଦୁଇନାମ ବଧ ନିମନ୍ତେ ପ୍ରୋକ୍ଷଣ ହୋଇଥିବା ପଶୁର ।
୧୨ । ପ୍ରମୀତ । ଉପସମ୍ପନ୍ନ । ପ୍ରୋକ୍ଷିତ ଏ ତିନିନାମ ଯଜ୍ଞାଦିରେ ହତ ପଶୁର ।
୧୩ । ଯଜ୍ଞର ହୋମ ଦ୍ରବ୍ୟକୁ ସାନ୍ନାଯ୍ୟ କହି ।
୧୪ । ଅଗ୍ନିହୁତ ହୋମ ଦ୍ରବ୍ୟକୁ ବଷଟ୍କୃତ କହି ।

[୧] ଦୀକ୍ଷାନ୍ତୋଽବଭୃଥୋ ଯଜ୍ଞେ [୨] ତତ୍କର୍ମାର୍ହଂ ତୁ ଯଜ୍ଞିୟଂ ।
ତ୍ରିଷ୍ୱ [୩] ଥ କ୍ରତୁକର୍ମେଷ୍ଟଂ [୪] ପୂର୍ତ୍ତଂ ଖାତାଦି କର୍ମଣି ॥
[୫।୬] ଅମୃତଂ ବିଘସୋ ଯଜ୍ଞଶେଷଭୋଜନଶେଷୟୋଃ ।
[୭] ତ୍ୟାଗୋ ବିହାପିତଂ ଦାନମୁତ୍ସର୍ଜନ ବିସର୍ଜନେ ॥
ବିଶ୍ରାଣନଂ ବିତରଣଂ ସ୍ପର୍ଶନଂ ପ୍ରତିପାଦନଂ ।
ପ୍ରାଦେଶନଂ ନିର୍ବପଣମପବର୍ଜ୍ଜନମଂହତିଃ ॥
[୮] ମୃତାର୍ଥଂ ତଦହର୍ଦ୍ଦାନଂ ତ୍ରିଷୁ ସ୍ୟାଦୌର୍ଦ୍ଧ୍ୱଦେହିକଂ ।
[୯] ପିତୃଦାନଂ ନିବାପଃ ସ୍ୟାତ୍ [୧୦] ଶ୍ରାଦ୍ଧଂ ତତ୍କର୍ମ ଶାସ୍ତ୍ରତଃ ॥
[୧୧] ଅନ୍ୱାହାର୍ଯ୍ୟଂ ମାସିକେ [୧୨] ଽଂଶୋଽଷ୍ଟମୋଽହ୍ନଃ କୁତପୋଽସ୍ତ୍ରିୟାଂ
[୧୩] ପର୍ଯ୍ୟେଷଣା ପରୀଷ୍ଟିଶ୍ଚାନ୍ୱେଷଣା ଚ ଗବେଷଣା ॥

---

୧ । ଯଜ୍ଞ ସମାପନକୁ ଅବଭୃଥ କହି ।
୨ । ଯଜ୍ଞର ଉପଯୁକ୍ତ ଦ୍ରବ୍ୟକୁ ଯାଜ୍ଞୀୟ କହି ।
୩ । ଯଜ୍ଞାଦି କର୍ମକୁ ଇଷ୍ଟ କହି ।
୪ । ପୁଷ୍କରିଣୀ ଆଦି କର୍ମକୁ ପୂର୍ତ୍ତ କହି ।
୫ । ଯଜ୍ଞ ଶେଷ ଦ୍ରବ୍ୟକୁ ଅମୃତ କହି ।
୬ । ଭୋଜନ ଶେଷ ଦ୍ରବ୍ୟକୁ ବିଘସ କହି ।
୭ । ତ୍ୟାଗ । ବିହାପିତ । ଦାନ । ଉତ୍ସର୍ଜନ । ବିସର୍ଜନ । ବିଶ୍ରାଣନ । ବିତରଣ । ସ୍ପର୍ଶନ । ପ୍ରତିପାଦନ । ପ୍ରାଦେଶନ । ନିର୍ବପଣ । ଅପବର୍ଜନ । ଅଂହତି । ଏ ଚଉଦ ନାମ ଦାନର ।
୮ । ମୃତାର୍ଥ ଦିଆଯିବା ଦାନକୁ ଔର୍ଦ୍ଧ୍ୱଦେହିକ କହି ।
୯ । ପିତୃଦାନ । ନିବାପ ଏ ଦୁଇନାମ ପିତୃଉଦ୍ଦେଶ ଦାନର ।
୧୦ । ଶାସ୍ତ୍ରାନୁସାରେ ପିତୃକର୍ମକୁ ଶ୍ରାଦ୍ଧ କହି ।
୧୧ । ମାସିକ ଶ୍ରାଦ୍ଧକୁ ଅନ୍ୱାହାର୍ଯ୍ୟ କହି ।
୧୨ । ପଞ୍ଚଦଶଧା ବିଭକ୍ତ ଦିବସ ଅଷ୍ଟମଭାଗକୁ କୁତପ କହି ।
୧୩ । ପର୍ଯ୍ୟେଷଣା । ପରୀଷ୍ଟି । ଅନ୍ୱେଷଣା । ଗବେଷଣା ଏ ଚାରିନାମ ଅନ୍ୱେଷଣର ।

[୧] ସନସ୍ତ୍ୱଧ୍ୟେଷଣା [୨] ଯାଚ୍ଞାଽଭିଶସ୍ତିର୍ଯାଚନାର୍ଥନା ।
ଷଟ୍ ତୁ ତ୍ରିଷ୍ୱ [୩]ର୍ଘ୍ୟ ମର୍ଘାର୍ଥେ [୪] ପାଦ୍ୟଂ ପାଦାୟ ବାରିଣି ॥
[୫] କ୍ରମାଦାତିଥ୍ୟାତିଥେୟେ ଅତିଥ୍ୟର୍ଥେଽତ୍ର ସାଧୁନି ।
[୬] ସ୍ୟାଦାବେଶିକଆଗନ୍ତୁରତିଥି ର୍ନା ଗୃହାଗତେ ॥
[୭] ପୂଜା ନମସ୍ୟାପଚିତିଃ ସପର୍ଯ୍ୟାଽର୍ଚ୍ଚାଽର୍ହଣାଃ ସମାଃ ।
[୮] ବରିବସ୍ୟା ତୁ ଶୁଶ୍ରୂଷା ପରିଚର୍ଯ୍ୟାପ୍ୟୁପାସନଂ ॥
[୯] ବ୍ରଜ୍ୟାଽଟାଟ୍ୟା ପର୍ଯ୍ୟଟନଂ (୧୦) ଚର୍ଯ୍ୟା ତ୍ୱୀର୍ଯ୍ୟାପଥସ୍ଥିତିଃ ।
[୧୧] ଉପସ୍ପର୍ଶସ୍ତ୍ୱାଚମନ [୧୨] ମଥ ମୌନମଭାଷଣଂ ॥
[୧୩] ଆନୁପୂର୍ବୀ ସ୍ତ୍ରିୟାଂ ବା ବୃତ୍ ପରିପାଟୀ ଅନୁକ୍ରମଃ ।
ପର୍ଯ୍ୟାୟଶ୍ଚ [୧୪] ଽତିପାତସ୍ତୁ ସ୍ୟାତ୍ ପର୍ଯ୍ୟୟ ଉପାତ୍ୟୟଃ ॥

---

୧ । ସନ । ଅଧ୍ୟେଷଣା ଏ ଦୁଇନାମ ଗୁରୁ ସତ୍କାର ପୂର୍ବକ କର୍ମ ନିଯୁକ୍ତର ।
୨ । ଯାଚ୍ଞା । ଅଭିଶସ୍ତି । ଯାଚନା । ଅର୍ଥନା ଏ ଚାରିନାମ ମାଗିବାର ।
୩ । ଅର୍ଘ୍ୟଜଳକୁ ଅର୍ଘ୍ୟ କହି ।
୪ । ପାଦପ୍ରକ୍ଷାଳନ ନିମିତ୍ତ ଜଳକୁ ପାଦ୍ୟ କହି ।
୫ । ଆତିଥ୍ୟ । ଆତିଥେୟ ଏ ଦୁଇନାମ ଅତିଥି ସେବାର୍ଥ ଉପଯୁକ୍ତର ।
୬ । ଆବେଶିକ । ଆଗନ୍ତୁ । ଅତିଥି ଏ ତିନିନାମ ଅତିଥିର ।
୭ । ପୂଜା । ନମସ୍ୟା । ଅପଚିତି । ସପର୍ଯ୍ୟା । ଅର୍ଚ୍ଚା । ଅର୍ହଣା ଏ ଛଅନାମ ପୂଜାର ।
୮ । ବରିବସ୍ୟା । ଶୁଶ୍ରୂଷା । ପରିଚର୍ଯ୍ୟା । ଉପାସନ । ଉପାସ୍ତି ଏ ପାଞ୍ଚନାମ ଶୁଶ୍ରୂଷାର ।
୯ । ବ୍ରଜ୍ୟା । ଅଟାଟ୍ୟା । ପର୍ଯ୍ୟଟନ ଏ ତିନିନାମ ଭ୍ରମଣର ।
୧୦ । ଈର୍ଯ୍ୟା ପଥାବଲମ୍ବନକୁ ଚର୍ଯ୍ୟା କହି ।
୧୧ । ଉପସ୍ପର୍ଶ । ଆଚମନ ଏ ଦୁଇନାମ ଆଚମନର ।
୧୨ । ମୌନ । ଅଭାଷଣ ଏ ଦୁଇନାମ ମୌନର ।
୧୩ । ଆନୁପୂର୍ବୀ । ଆବୃତ୍ । ପରିପାଟୀ । ଅନୁକ୍ରମ । ପର୍ଯ୍ୟାୟ ଏ ପାଞ୍ଚନାମ ପରିପାଟୀର ।
୧୪ । ପର୍ଯ୍ୟୟ । ଅତିପାତ । ଉପାତ୍ୟୟ ଏ ତିନିନାମ ବ୍ୟତିକ୍ରମର ।

[୧] ନିୟମୋ ବ୍ରତ [୨] ମସ୍ତ୍ରୀ ତଚ୍ଚୋପବାସାଦ ପୁଣ୍ୟକଂ ।
[୩] ଔପବସ୍ତ୍ରନ୍ତୂପବାସୋ [୪] ବିବେକଃ ପୃଥଗାତ୍ମତା ।।
[୫] ସ୍ୟାଦ୍ ବ୍ରହ୍ମବର୍ଚ୍ଚସଂ ବୃତ୍ତାଧ୍ୟୟନର୍ଦ୍ଧିରଥାଞ୍ଜଳିଃ ।
[୬] ପାଠେ ବ୍ରହ୍ମାଞ୍ଜଳିଃ [୭] ପାଠେ ବିପ୍ରୁଷୋ ବ୍ରହ୍ମବିନ୍ଦବଃ ।।
[୮] ଧ୍ୟାନଯୋଗାସନେ ବ୍ରହ୍ମାସନଂ [୯] କଳ୍ପେ ବିଧିକ୍ରମୌ ।
[୧୦] ମୁଖ୍ୟଃ ସ୍ୟାତ୍ପ୍ରଥମଃ କଳ୍ପୋ [୧୧] ଽନୁକଳ୍ପସ୍ତୁ ତତୋଽଧମଃ ।।
[୧୨] ସଂସ୍କାରପୂର୍ବଂ ଗ୍ରହଣଂ ସ୍ୟାଦୁପାକରଣଂ ଶ୍ରୁତେଃ ।
[୧୩] ସମେ ତୁ ପାଦଗ୍ରହଣମଭିବାଦନ ମିତ୍ୟୁଭେ ।।
[୧୪] ଭିକ୍ଷୁଃ ପରିବ୍ରାଟ୍ କର୍ମନ୍ଦୀ ପାରାଶର୍ଯ୍ୟପି ମସ୍କରୀ ।
[୧୫] ତପସ୍ୱୀ ତାପସଃ ପାରିକାଙ୍କ୍ଷୀ [୧୬] ବାଚଂଯମୋ ମୁନିଃ ।।

---

୧ । ନିୟମ । ବ୍ରତ ଏ ଦୁଇନାମ ବ୍ରତର । ୨ । ଉପବାସରୂପ ବ୍ରତକୁ ପୁଣ୍ୟକ କହି ।
୩ । ଔପବସ୍ତ୍ର । ଉପବାସ ଏ ଦୁଇନାମ ଉପବାସର ।
୪ । ବିବେକ । ପୃଥଗାତ୍ମତା ଏ ଦୁଇନାମ ବିବେକର ।
୫ । ବ୍ରହ୍ମବର୍ଚ୍ଚସ । ବୃତ୍ତାଧ୍ୟୟନର୍ଦ୍ଧି ଏ ଦୁଇନାମ ବେଦବୋଧିତାଚାରର ।
୬ । ବେଦପାଠାର୍ଥ ପ୍ରଣବୋଚ୍ଚାରଣ ପୂର୍ବକ କୃତାଞ୍ଜଳିକି ବ୍ରହ୍ମାଞ୍ଜଳି କହି ।
୭ । ବେଦପାଠନିର୍ଗତ ମୁଖବିନ୍ଦୁକୁ ବ୍ରହ୍ମବିନ୍ଦୁ କହି ।
୮ । ଧ୍ୟାନ ଏବ ଯୋଗାସନ ଏ ଦୁହିଙ୍କି ବ୍ରହ୍ମାସନ କହି ।
୯ । କଳ୍ପ । ବିଧି । କ୍ରମ ଏ ତିନିନାମ ବେଦବିଧିର ।
୧୦ । ପ୍ରଥମ ବେଦବିଧିର ନାମକୁ ମୁଖ୍ୟ କହି ।
୧୧ । ଅଧମ ବେଦବିଧିକି ଅନୁକଳ୍ପ କହି ।
୧୨ । ସଂସ୍କାର ପୂର୍ବକ ବେଦ ଗ୍ରହଣକୁ ଉପାକରଣ କହି ।
୧୩ । ପାଦଗ୍ରହଣ । ଅଭିବାଦନ ଏ ଦୁଇନାମ ପାଦଗ୍ରହଣପୂର୍ବକ ପ୍ରଣାମର ।
୧୪ । ଭିକ୍ଷୁ । ପରିବ୍ରାଜ୍ । କର୍ମନ୍ଦିନ୍ । ପାରାଶରିନ୍ । ମସ୍କରିନ୍ ଏ ପାଞ୍ଚନାମ
ଚତୁର୍ଥାଶ୍ରମର ।
୧୫ । ତପସ୍ୱିନ୍ । ତାପସ । ପାରିକାଙ୍କ୍ଷିନ୍ ଏ ତିନିନାମ ତପସ୍ୱୀର ।
୧୬ । ବାଚଂଯମ । ମୁନି ଏ ଦୁଇନାମ ମୁନିର ।

[୧] ତପଃ କ୍ଳେଶସହୋ ଦାନ୍ତୋ [୨] ବର୍ଣ୍ଣିନୋ ବ୍ରହ୍ମଚାରିଣଃ ।
[୩] ଋଷୟଃ ସତ୍ୟବଚସଃ [୪] ସ୍ନାତକସ୍ତ୍ୱାପ୍ଳୁତବ୍ରତୀ ॥
[୫] ଯେ ନିର୍ଜିତେନ୍ଦ୍ରିୟଗ୍ରାମା ଯତିନୋ ଯତୟଶ୍ଚ ତେ ।
[୬] ଯଃ ସ୍ଥଣ୍ଡିଲେ ବ୍ରତବଶାଚ୍ଛେତେ ସ୍ଥାଣ୍ଡିଲଶାୟ୍ୟସୌ ॥
ସ୍ଥାଣ୍ଡିଲଶ୍ଚ [୭] ଥ ବିରଜସ୍ତମସଃ ସ୍ୟୁର୍ଦ୍ୱୟାତିଗାଃ ।
[୮] ପବିତ୍ରଃ ପ୍ରୟତଃ ପୂତଃ [୯] ପାଷଣ୍ଡାଃ ସର୍ବଲିଙ୍ଗିନଃ ॥
[୧୦] ପାଲାଶୋ ଦଣ୍ଡ ଆଷାଢୋ ବ୍ରତେ [୧୧] ରାମ୍ଭସ୍ତୁ ବୈଣବଃ ।
[୧୨] ଅସ୍ତ୍ରୀ କମଣ୍ଡଲୁଃ କୁଣ୍ଡୀ [୧୩] ବ୍ରତିନାମାସନଂ ବୃଷୀ ॥
[୧୪] ଅଜିନଂ ଚର୍ମ୍ମ କୃତ୍ତିଃ ସ୍ତ୍ରୀ [୧୫] ଭୈକ୍ଷଂ ଭିକ୍ଷାକଦମ୍ବକଂ ।
[୧୬] ସ୍ୱାଧ୍ୟାୟଃ ସ୍ୟାଜ୍ଜପଃ [୧୭] ସୁତ୍ୟାଭିଷବଃ ସବନଂ ଚ ସା ॥

---

୧ । ତପଃ । କ୍ଳେଶସହ । ଦାନ୍ତ ଏ ତିନିନାମ ତପସ୍ୟା କ୍ଳେଶସହିଷ୍ଣୁ ବ୍ୟକ୍ତିର ।
୨ । ବର୍ଣ୍ଣିନ୍ । ବ୍ରହ୍ମଚାରିନ ଏ ଦୁଇନାମ ବ୍ରହ୍ମଚାରୀର ।
୩ । ଋଷି । ସତ୍ୟବଚସ ଏ ଦୁଇନାମ ଋଷିଙ୍କର ।
୪ । ସ୍ନାତକ । ଆପ୍ଳୁତବ୍ରତିନ ଏ ଦୁଇନାମ ସମାପ୍ତ ବେଦାଧ୍ୟୟନ ବ୍ୟକ୍ତିର ।
୫ । ଯତିନ୍ । ଯତି ଏ ଦୁଇନାମ ଜିତେନ୍ଦ୍ରିୟ ବ୍ୟକ୍ତିର ।
୬ । ବ୍ରତାର୍ଥ ଯୋଗେ ସ୍ଥଣ୍ଡିଳରେ ଶୋଇବା ବ୍ୟକ୍ତିଙ୍କ ସ୍ଥଣ୍ଡିଳଶାୟୀ କହି ।
୭ । ବିରଜସ୍ତମସ୍ । ଦ୍ୱୟାତିଗ ଏ ଦୁଇନାମ ରଜ ଓ ତମୋଗୁଣରହିତ ବ୍ୟକ୍ତିର ।
୮ । ପବିତ୍ର । ପ୍ରୟତ । ପୂତ ଏ ତିନିନାମ ପବିତ୍ର ବ୍ୟକ୍ତିର ।
୯ । ପାଷଣ୍ଡ । ସର୍ବଲିଙ୍ଗିନ୍ ଏ ଦୁଇନାମ ବେଦବହିର୍ଭୂତ ବ୍ୟକ୍ତିର ।
୧୦ । ବ୍ରତରେ ପଳାଶଦଣ୍ଡକୁ ଆଷାଢ଼ କହି ।
୧୧ । ବ୍ରତରେ ବାଉଁଶ ଦଣ୍ଡକୁ ରାମ୍ଭ କହି ।
୧୨ । କମଣ୍ଡଳୁ । କୁଣ୍ଡୀ ଏ ଦୁଇନାମ କମଣ୍ଡଳୁର ।
୧୩ । ବ୍ରତୀମାନଙ୍କର ଆସନକୁ ବୃଷୀ କହି ।
୧୪ । ଅଜିନ । ଚର୍ମନ୍ । କୃତ୍ତି ଏ ତିନିନାମ ବ୍ରତୀମାନଙ୍କ ବ୍ୟବହାର୍ଯ୍ୟ ଚର୍ମର ।
୧୫ । ଭିକ୍ଷାସମୂହକୁ ଭୈକ୍ଷ କହି ।
୧୬ । ସ୍ୱାଧ୍ୟାୟ । ଜପ ଏ ଦୁଇନାମ ଜପର ।
୧୭ । ସୁତ୍ୟା । ଅଭିଷବ । ସବନ ଏ ତିନିନାମ ଯଜ୍ଞସ୍ନାନର ।

[୧] ସର୍ବୈନସାମପଧ୍ୱଂସି ଜପ୍ୟଂ ତ୍ରିଷ୍ୱଘମର୍ଷଣଂ ।
[୨] ଦର୍ଶଶ୍ଚ [୩] ପୌର୍ଣ୍ଣମାସଶ୍ଚ ଯାଗୌ ପକ୍ଷାନ୍ତଯୋଃ ପୃଥକ୍ ॥
[୪] ଶରୀରସାଧନାପେକ୍ଷଂ ନିତ୍ୟଂ ଯତ୍କର୍ମ ତଦ୍ୟମଃ ।
[୫] ନିୟମସ୍ତୁ ସ ଯତ୍କର୍ମାନିତ୍ୟମାଗନ୍ତୁସାଧନଂ ॥
[୬] ଉପବୀତଂ ଯଜ୍ଞସୂତ୍ରଂ ପ୍ରୋଦ୍ଧୃତେ ଦକ୍ଷିଣେ କରେ ।
[୭] ପ୍ରାଚୀନାବୀତମନ୍ୟସ୍ମିନ୍ [୮] ନିବୀତଂ କଣ୍ଠଲମ୍ବିତଂ ॥
[୯] ଅଙ୍ଗୁଲ୍ୟଗ୍ରେ ତୀର୍ଥଂ ଦୈବଂ [୧୦] ସ୍ୱଲ୍ପାଙ୍ଗୁଲ୍ୟୋର୍ମୂଲେ କାୟଂ
[୧୧] ମଧ୍ୟେଽଙ୍ଗୁଷ୍ଠାଙ୍ଗୁଲ୍ୟୋଃ ପୈତ୍ରଂ [୧୨] ମୂଲେ ତ୍ୱଙ୍ଗୁଷ୍ଠସ୍ୟ ବ୍ରାହ୍ମଂ ।
[୧୩] ସ୍ୟାଦ୍‌ବ୍ରହ୍ମଭୂୟଂ ବ୍ରହ୍ମତ୍ୱଂ ବ୍ରହ୍ମସାୟୁଜ୍ୟମିତ୍ୟପି ।
[୧୪] ଦେବଭୂୟାଦିକଂ ତଦ୍ୱତ୍ [୧୫] କୃଚ୍ଛ୍ରଂ ସାନ୍ତପନାଦିକଂ ॥

---

୧ । ପାପନାଶକ ଜପ୍ୟମନ୍ତ୍ରକୁ ଅଘମର୍ଷଣ କହନ୍ତି ।
୨ । ଅମାବାସ୍ୟାରେ କର୍ତ୍ତବ୍ୟ ଯାଗର ନାମକୁ ଦର୍ଶ କହନ୍ତି ।
୩ । ପୂର୍ଣ୍ଣିମାରେ କର୍ତ୍ତବ୍ୟ ଯାଗର ନାମକୁ ପୌର୍ଣ୍ଣମାସ କହନ୍ତି ।
୪ । ଶରୀର ସାଧନାପେକ୍ଷ ନିତ୍ୟ କର୍ତ୍ତବ୍ୟ ନିତ୍ୟକର୍ମକୁ ଯମ କହନ୍ତି ।
୫ । ଅନିତ୍ୟ ଆଗନ୍ତୁକ କାରଣରୁ କର୍ତ୍ତବ୍ୟକର୍ମକୁ ନିୟମ କହନ୍ତି ।
୬ । ବାମସ୍କନ୍ଧାର୍ପିତ ଯଜ୍ଞୋପବୀତକୁ ଉପବୀତ କହନ୍ତି ।
୭ । ଦକ୍ଷିଣ ସ୍କନ୍ଧାର୍ପିତ ଯଜ୍ଞୋପବୀତକୁ ପ୍ରାଚୀନାବୀତ କହନ୍ତି ।
୮ । କଣ୍ଠଲମ୍ବିତ ଯଜ୍ଞୋପବୀତକୁ ନିବୀତ କହନ୍ତି ।
୯ । ଅଙ୍ଗୁଳିର ଅଗ୍ରଭାଗକୁ ଦୈବତୀର୍ଥ କହନ୍ତି ।
୧୦ । କନିଷ୍ଠାଙ୍ଗୁଳି ଏବଂ ଅନାମିକା ଅଙ୍ଗୁଳିର ମୂଳଦେଶକୁ କାୟତୀର୍ଥ କହନ୍ତି ।
୧୧ । ଅଙ୍ଗୁଷ୍ଠ ଅଉ ତର୍ଜ୍ଜନୀର ମଧ୍ୟଭାଗକୁ ପୈତ୍ରତୀର୍ଥ କହନ୍ତି ।
୧୨ । ବୃଦ୍ଧାଙ୍ଗୁଳିର ମୂଳଦେଶକୁ ବ୍ରାହ୍ମତୀର୍ଥ କହନ୍ତି ।
୧୩ । ବ୍ରହ୍ମଭୂୟ । ବ୍ରହ୍ମତ୍ୱ । ବ୍ରହ୍ମସାୟୁଜ୍ୟ ଏ ତିନିନାମ ବ୍ରହ୍ମତ୍ୱର ।
୧୪ । ଦେବଭୂୟ । ଦେବତ୍ୱ । ଦେବସାୟୁଜ୍ୟ ଏ ତିନିନାମ ଦେବତ୍ୱର ।
୧୫ । ପ୍ରାୟଶ୍ଚିତ୍ତାତ୍ମକ ସାନ୍ତପନାଦି ବ୍ରତକୁ କୃଚ୍ଛ୍ର କହନ୍ତି ।

[୧] ସନ୍ନ୍ୟାସବତ୍ୟନଶନେ ପୁମାନ୍ ପ୍ରାୟୋ [୨] ଽଥ ବୀରହା ।
ନଷ୍ଟାଗ୍ନିଃ [୩] କୁହନା ଲୋଭାନ୍ମିଥ୍ୟେର୍ଯ୍ୟାପଥକଳ୍ପନା ॥
[୪] ବ୍ରାତ୍ୟଃ ସଂସ୍କାରହୀନଃ ସ୍ୟା [୫] ଦସ୍ୱାଧ୍ୟାୟୋ ନିରାକୃତିଃ ।
[୬] ଧର୍ମ୍ମଧ୍ୱଜୀ ଲିଙ୍ଗବୃତ୍ତି [୭] ରବକୀର୍ଣ୍ଣୀ କ୍ଷତବ୍ରତଃ ॥
ସୁପ୍ତେ ଯସ୍ମିନ୍ନସ୍ତମେତି ସୁପ୍ତେ ଯସ୍ମିନ୍ନୁଦେତି ଚ ।
[୮] ଅଂଶୁମାନଭିନିର୍ମ୍ମୁକ୍ତୋ [୯] ଽଭ୍ୟୁଦିତୌ ତୌ ଯଥାକ୍ରମଂ ॥
[୧୦] ପରିବେତ୍ତାନୁଜୋ ଽନୂଢେ ଜ୍ୟେଷ୍ଠେ ଦାରପରିଗ୍ରହାତ୍ ।
[୧୧] ପରିବିତ୍ତିସ୍ତୁ ତଜ୍ଜ୍ୟାୟାନ୍ [୧୨] ବିବାହୋପଯମୌ ସମୌ ॥
ତଥା ପରିଣୟୋଦ୍ୱାହୋପଯାମାଃ ପାଣିପୀଡ଼ନଂ ।
[୧୩] ବ୍ୟବାୟୋ ଗ୍ରାମ୍ୟଧର୍ମ୍ମସ୍ତୁ ରତଂ ନିଧୁବନଂ ଚ ସଃ ॥

---

୧ । ସନ୍ନ୍ୟାସଜନିତ ଅନଶନକୁ ପ୍ରାୟ କହି ।
୨ । ବୀରହନ୍ । ନଷ୍ଟାଗ୍ନି ଏ ଦୁଇନାମ ବୃଥାଦିବଂଶଦ୍ୱାରେ ନଷ୍ଟାଗ୍ନି ବ୍ୟକ୍ତିର ।
୩ । ଲୋଭପ୍ରଯୁକ୍ତ ମିଥ୍ୟା ଧର୍ମପଥଆଶ୍ରୟକୁ କୁହନା କହି ।
୪ । ବ୍ରାତ୍ୟ । ସଂସ୍କାରହୀନ ଏ ଦୁଇନାମ ଷୋଡ଼ଶବର୍ଷପର୍ଯ୍ୟନ୍ତ ଅକୃତଉପନୟନବ୍ୟକ୍ତିର ।
୫ । ଅସ୍ୱାଧ୍ୟାୟ । ନିରାକୃତ ଏ ଦୁଇନାମ ବେଦାଧ୍ୟୟନଶୂନ୍ୟ ବ୍ୟକ୍ତିର ।
୬ । ଧର୍ମ୍ମଧ୍ୱଜିନ୍ । ଲିଙ୍ଗବୃତ୍ତି ଏ ଦୁଇନାମ ଉପାର୍ଜନାର୍ଥ ଜଟା ଭସ୍ମାଦିଚିହ୍ନଧାରୀ ବ୍ୟକ୍ତିର ।
୭ । ଅବକୀର୍ଣ୍ଣିନ୍ । କ୍ଷତବ୍ରତ ଏ ଦୁଇନାମ ଭ୍ରଷ୍ଟବ୍ରତ ବ୍ୟକ୍ତିର ।
୮ । ଯେ ବ୍ରତୀର ଶୟନ ଦେଖିକରି ସୂର୍ଯ୍ୟ ଅସ୍ତ ଯାନ୍ତି ତାକୁ ଅଭିନିର୍ମୁକ୍ତ କହି ।
୯ । ଯେ ବ୍ରତୀର ଶୟନ ଦେଖି ସୂର୍ଯ୍ୟ ଉଦୟ ହୁଅନ୍ତି ତାହାକୁ ଅଭ୍ୟୁଦିତ କହି ।
୧୦ । ଅବିବାହିତ ଜ୍ୟେଷ୍ଠ ଥାଉଁ କନିଷ୍ଠ ବିବାହ ହେଲେ ତାକୁ ପରିବେତ୍ତୃ କହି ।
୧୧ । ଯାହାର ବିବାହ ନ ହେଉଁ କନିଷ୍ଠ ବିବାହ ହୁଏ ସେ ଜ୍ୟେଷ୍ଠକୁ ପରିବିତ୍ତି କହି ।
୧୨ । ବିବାହ । ଉପଯମ । ପରିଣୟ । ଉଦ୍ୱାହ । ଉପଯାମ । ପାଣିପୀଡ଼ନ ଏ ଛନାମ ବିବାହର ।
୧୩ । ବ୍ୟବାୟ । ଗ୍ରାମ୍ୟଧର୍ମ । ରତ । ନିଧୁବନ ଏ ଚାରିନାମ ମୈଥୁନର ।

[୧] ତ୍ରିବର୍ଗୋ ଧର୍ମକାମାର୍ଥୈ [୨] ଶ୍ଚତୁର୍ବର୍ଗଃ ସମୋକ୍ଷକୈଃ ।
[୩] ସବଲୈସ୍ତୈଶ୍ଚତୁର୍ଭଦ୍ରଂ [୪] ଜନ୍ୟାଃ ସ୍ନିଗ୍ଧାବରସ୍ୟ ଯେ ॥

---

## କ୍ଷତ୍ରିୟବର୍ଗଃ ।

[୧] ମୂର୍ଦ୍ଧାଭିଷିକ୍ତୋ ରାଜନ୍ୟୋ ବାହୁଜଃ କ୍ଷତ୍ରିୟୋ ବିରାଟ୍ ।
[୨] ରାଜ୍ଞି ରାଟ୍ ପାର୍ଥିବ କ୍ଷ୍ମାଭୃନ୍ନୃପ ଭୂପ ମହୀକ୍ଷିତଃ ॥
[୩] ରାଜା ତୁ ପ୍ରଣତାଶେଷସାମନ୍ତଃ ସ୍ୟାଦଧୀଶ୍ୱରଃ ।
[୪] ଚକ୍ରବର୍ତ୍ତୀ ସାର୍ବଭୌମୋ [୫] ନୃପୋଽନ୍ୟୋ ମଣ୍ଡଳେଶ୍ୱରଃ ।
[୬] ଯେନେଷ୍ଟଂ ରାଜସୂୟେନ ମଣ୍ଡଳସ୍ୟେଶ୍ୱରଶ୍ଚ ଯଃ ।
ଶାସ୍ତି ଯଶ୍ଚାଜ୍ଞୟା ରାଜ୍ଞଃ ସ ସମ୍ରାଡ଼୍ [୭] ଅଥ ରାଜକଂ ।

---

୧ । ଧର୍ମ । ଅର୍ଥ । କାମ ଏମାନଙ୍କୁ ତ୍ରିବର୍ଗ କହି ।
୨ । ଧର୍ମ । ଅର୍ଥ । କାମ । ମୋକ୍ଷ ଏ ଚାରିଙ୍କି ଚତୁର୍ବର୍ଗ କହି ।
୩ । ଧର୍ମ । ଅର୍ଥ । କାମ । ମୋକ୍ଷ । ସୈନ୍ୟ ଏ ପାଞ୍ଚକୁ ଚତୁର୍ଭଦ୍ର କହି ।
୪ । ବରର ସମାନ ବୟସ୍କ ପାର୍ଶ୍ୱବର୍ତ୍ତୀ ବ୍ୟକ୍ତିଙ୍କ ଜନ୍ୟା କହି ।

---

### କ୍ଷତ୍ରିୟବର୍ଗଃ ।

୧ । ମୂର୍ଦ୍ଧାଭିଷିକ୍ତ । ରାଜନ୍ୟ । ବାହୁଜ । କ୍ଷତ୍ରିୟ । ବିରାଟ ଏ ପାଞ୍ଚନାମ କ୍ଷତ୍ରିୟର ।
୨ । ରାଜନ୍ । ରାଜ୍ । ପାର୍ଥିବ । କ୍ଷ୍ମାଭୃତ୍ । ନୃପ । ଭୂପ । ମହୀକ୍ଷିତ୍ ଏ ସାତନାମ ରାଜାର
୩ । ପ୍ରଣତାଶେଷସାମନ୍ତ ରାଜାକୁ ଅଧୀଶ୍ୱର କହି ।
୪ । ଚକ୍ରବର୍ତ୍ତିନ୍ । ସାର୍ବଭୌମ ଏ ଦୁଇନାମ ସମୁଦ୍ରାନ୍ତପୃଥ୍ୱୀରାଜାର ।
୫ । ଅନ୍ୟ ରାଜାକୁ ମଣ୍ଡଳେଶ୍ୱର କହି ।
୬ । ରାଜସୂୟ ଯାଗକର୍ତ୍ତା ଏବଂ ମଣ୍ଡଳେଶ୍ୱର ଓ ସର୍ବୋପରି ରାଜାକୁ ସମ୍ରାଜ କହି ।
୭ । ନୃପତିସମୂହକୁ ରାଜକ କହି ।

[୧] ରାଜନ୍ୟକଂ ଚ ନୃପତେଃ କ୍ଷତ୍ରିୟାଣାଂ ଗଣେ କ୍ରମାତ୍ ।
[୨] ମନ୍ତ୍ରୀ ଧୀସଚିବୋଽମାତ୍ୟୋ [୩] ଽନ୍ୟେ କର୍ମସଚିବାସ୍ତତଃ ॥
[୪] ମହାମାତ୍ରାଃ ପ୍ରଧାନାନି [୫] ପୁରୋଧାସ୍ତୁ ପୁରୋହିତଃ ।
[୬] ଦ୍ରଷ୍ଟରି ବ୍ୟବହାରାଣାଂ ପ୍ରାଡ୍ବିବାକାକ୍ଷଦର୍ଶକୌ ॥
[୭] ପ୍ରତୀହାରେ ଦ୍ୱାରପାଲ ଦ୍ୱାସ୍ଥ ଦ୍ୱାସ୍ଥିତ ଦର୍ଶକାଃ ।
[୮] ରକ୍ଷିବର୍ଗସ୍ତ୍ୱନୀକସ୍ଥୋ [୯] ଽଥାଧ୍ୟକ୍ଷାଧିକୃତୌ ସମୌ ॥
[୧୦] ସ୍ଥାୟୁକୋଽଧିକୃତୋ ଗ୍ରାମେ [୧୧] ଗୋପୋ ଗ୍ରାମେଷୁ ଭୂରିଷୁ ।
[୧୨] ଭୌରିକଃ କନକାଧ୍ୟକ୍ଷୋ [୧୩] ରୂପ୍ୟାଧ୍ୟକ୍ଷସ୍ତୁ ନୈଷ୍କିକଃ ॥
[୧୪] ଅନ୍ତଃପୁରେ ତ୍ୱଧିକୃତଃ ସ୍ୟାଦନ୍ତର୍ବଂଶିକୋ ଜନଃ ।
[୧୫] ସୌବିଦଲ୍ଲାଃ କଞ୍ଚୁକିନଃ ସ୍ଥାପତ୍ୟାଃ ସୌବିଦାଶ୍ଚ ତେ ॥

---

୧ । କ୍ଷତ୍ରିୟସମୂହଙ୍କୁ ରାଜନ୍ୟକ କହି ।
୨ । ମନ୍ତ୍ରିନ୍ । ଧୀସଚିବ । ଅମାତ୍ୟ ଏ ତିନିନାମ ମନ୍ତ୍ରୀର ।
୩ । ରାଜାର କର୍ମକର୍ତ୍ତାଙ୍କୁ କର୍ମ ସଚିବ କହି ।
୪ । ମହାମାତ୍ର । ପ୍ରଧାନ ଏ ଦୁଇନାମ ରାଜାର ପ୍ରଧାନ ମନ୍ତ୍ରୀର ।
୫ । ପୁରୋଧସ୍ । ପୁରୋହିତ ଏ ଦୁଇନାମ ପୁରୋହିତର ।
୬ । ପ୍ରାଡ୍ବିବାକ୍ । ଅକ୍ଷଦର୍ଶକ ଏ ଦୁଇନାମ ବିଚାରକର ।
୭ । ପ୍ରତିହାର । ଦ୍ୱାରପାଳ । ଦ୍ୱାସ୍ଥ । ଦ୍ୱାସ୍ଥିତ । ଦର୍ଶକ ଏ ପାଞ୍ଚନାମ ରାଜାଙ୍କ ଦ୍ୱାରୀର ।
୮ । ରକ୍ଷିବର୍ଗ । ଅନୀକସ୍ଥ ଏ ଦୁଇନାମ ରାଜାଙ୍କ ରକ୍ଷା ନିମିତ୍ତ ଶସ୍ତ୍ରଧାରୀ ପୁରୁଷରେ ।
୯ । ଅଧ୍ୟକ୍ଷ । ଅଧିକୃତ ଏ ଦୁଇନାମ ରାଜାଙ୍କ ଅଧ୍ୟକ୍ଷର ।
୧୦ । ଏକଗ୍ରାମର ଅଧିକାରୀ ବ୍ୟକ୍ତିକି ସ୍ଥାୟୁକ କହି ।
୧୧ । ଅନେକ ଗ୍ରାମର ଅଧିକାରୀକି ଗୋପ କହି ।
୧୨ । ଭୌରିକ । କନକାଧ୍ୟକ୍ଷ ଏ ଦୁଇନାମ ସ୍ୱର୍ଣ୍ଣାଧ୍ୟକ୍ଷର ।
୧୩ । ରୂପାଧ୍ୟକ୍ଷ । ନୈଷ୍କିକ ଏ ଦୁଇନାମ ରୌପ୍ୟାଧ୍ୟକ୍ଷର ।
୧୪ । ରାଜାର ଅନ୍ତଃପୁରାଧ୍ୟକ୍ଷଙ୍କୁ ଅନ୍ତର୍ବଂଶିକ କହି ।
୧୫ । ସୌବିଦଲ୍ଲ । କଞ୍ଚୁକିନ୍ । ସ୍ଥାପତ୍ୟ । ସୌବିଦ ଏ ଚାରିନାମ ରାଜାର ଅନ୍ତଃପୁର-
ସ୍ଥିତ ସ୍ତ୍ରୀରକ୍ଷକର ।

[୧] ଶଣ୍ଢୋ ବର୍ଷବରସ୍ତୁଲ୍ୟୌ [୨] ସେବକାର୍ଥ୍ୟନୁଜୀବିନଃ ।
[୩] ବିଷୟାନନ୍ତରୋ ରାଜା ଶତ୍ରୁ [୪] ର୍ମିତ୍ରମତଃପରଂ ॥
[୫] ଉଦାସୀନଃ ପରତରଃ [୬] ପାର୍ଷ୍ଣିଗ୍ରାହସ୍ତୁ ପୃଷ୍ଠତଃ ।
[୭] ରିପୌ ବୈରି ସପତ୍ନାରି ଦ୍ୱିଷଦ୍ଦ୍ୱେଷଣ ଦୁର୍ହୃଦଃ ॥
ଦ୍ୱିଡ୍‌ବିପକ୍ଷାହିତାମିତ୍ର ଦସ୍ୟୁ ଶାତ୍ରବ ଶତ୍ରବଃ ।
ଅଭିଘାତି ପରାରାତି ପ୍ରତ୍ୟର୍ଥିପରିପନ୍ଥିନଃ ॥
[୮] ବୟସ୍ୟଃ ସ୍ନିଗ୍ଧଃ ସବୟା [୯] ଅଥ ମିତ୍ରଂ ସଖା ସୁହୃତ୍ ।
[୧୦] ସଖ୍ୟଂ ସାପ୍ତପଦୀନଂ ସ୍ୟା [୧୧] ଦନୁରୋଧୋଽନୁବର୍ତ୍ତନଂ ॥
[୧୨] ଯଥାର୍ହବର୍ଣ୍ଣଃ ପ୍ରଣିଧିରପସର୍ପଶ୍ଚରଃସ୍ପଶଃ ।
ଚାରଶ୍ଚ ଗୂଢ଼ପୁରୁଷ [୧୩] ଶ୍ଚାପ୍ତଃ ପ୍ରତ୍ୟୟିତ ସ୍ତ୍ରିଷୁ ॥

---

୧ । ଶଣ୍ଢ । ବର୍ଷବର ଏ ଦୁଇନାମ ରଜାର ଅନ୍ତଃପୁରସ୍ଥିତ ନପୁଂସକର ।
୨ । ସେବକ । ଅର୍ଥିନ୍ । ଅନୁଜୀବିନ୍ ଏ ତିନିନାମ ରଜାଙ୍କ ଚାକରର ।
୩ । ଆପଣା ରାଜ୍ୟର ଅନନ୍ତର ରାଜ୍ୟର ରାଜାର ନାମକୁ ଶତ୍ରୁ କହି ।
୪ । ତଦନନ୍ତର ରାଜ୍ୟସ୍ଥ ରାଜାକୁ ମିତ୍ର କହି ।
୫ । ତଦନନ୍ତର ରାଜ୍ୟସ୍ଥ ରାଜାଙ୍କୁ ଉଦାସୀନ କହି ।
୬ । ରାଜ୍ୟର ପଶ୍ଚାଦ୍‌ବର୍ତ୍ତି ଦେଶାଧିପମାନଙ୍କୁ ପାର୍ଷ୍ଣିଗ୍ରାହ କହି ।
୭ । ରିପୁ । ବୈରିନ୍ । ସପତ୍ନ । ଅରି । ଦ୍ୱିଷତ୍ । ଦ୍ୱେଷଣ । ଦୁର୍ହୃଦ୍ । ଦ୍ୱିଷ୍ । ବିପକ୍ଷ । ଅହିତ । ଅମିତ୍ର । ଦସ୍ୟୁ । ଶାତ୍ରବ । ଶତ୍ରୁ । ଅଭିଘାତିନ୍ । ପର । ଅରାତି । ପ୍ରତ୍ୟର୍ଥିନ୍ । ପରିପନ୍ଥିନ୍ ଏ ଊଣେଇଶ ନାମ ସାଧାରଣ ଶତ୍ରୁର ।
୮ । ବୟସ୍ୟ । ସ୍ନିଗ୍ଧ । ସବୟସ୍ ଏ ତିନିନାମ ସମାନବୟସ୍କ ମିତ୍ରର ।
୯ । ମିତ୍ର । ସଖି । ସୁହୃଦ୍ ଏ ତିନିନାମ ସାଧାରଣ ମିତ୍ରର ।
୧୦ । ସଖ୍ୟ । ସାପ୍ତପଦୀନ ଏ ଦୁଇନାମ ସଖ୍ୟତାର ।
୧୧ । ଅନୁରୋଧ । ଅନୁବର୍ତ୍ତନ ଏ ଦୁଇନାମ ଅପର ବନ୍ଧୁ ଅଭିଳାଷ ସମ୍ପାଦନର ।
୧୨ । ଯଥାର୍ହବର୍ଣ୍ଣ । ପ୍ରଣିଧି । ଅପସର୍ପ । ଚର । ସ୍ପଶ୍ । ଚାର । ଗୂଢ଼ପୁରୁଷ ଏ ସାତ ନାମ ଚରର ।
୧୩ । ଆପ୍ତ । ପ୍ରତ୍ୟୟିତ ଏ ଦୁଇନାମ ରଜାଙ୍କ ବିଶ୍ୱସ୍ତଲୋକର ।

[୧] ସାମ୍ବତ୍ସରେ ଜ୍ୟୌତିଷିକୋ ଦୈବଜ୍ଞଃ ଗଣକାବପି ।
ସ୍ୟୁର୍ମୌହୂର୍ତ୍ତିକ ମୌହୂର୍ତ୍ତ ଜ୍ଞାନି କାର୍ତ୍ତାନ୍ତିକା ଅପି ॥
[୨] ତାନ୍ତ୍ରିକୋ ଜ୍ଞାତସିଦ୍ଧାନ୍ତଃ [୩] ସତ୍ରୀ ଗୃହପତିଃ ସମୌ ।
[୪] ଲିପିକରେ ଽକ୍ଷରଚଣୋ ଽକ୍ଷରଚୁଞ୍ଚୁଶ୍ଚ ଲେଖକେ ॥
[୫] ଲିଖିତାକ୍ଷରବିନ୍ୟାସେ ଲିପିର୍ଲିବିରୁଭେ ସ୍ତ୍ରିୟୌ ।
[୬] ସ୍ୟାତ୍ସନ୍ଦେଶହରେ ଦୂତୋ [୭] ଦୂତ୍ୟଂ ତଦ୍ଭାବକର୍ମଣି ॥
[୮] ଅଧ୍ୱନୀନୋ ଽଧ୍ୱଗୋ ଽଧ୍ୱନ୍ୟଃ ପାନ୍ଥଃ ପଥିକ ଇତ୍ୟପି ।
[୯] ସ୍ୱାମ୍ୟମାତ୍ୟ ସୁହୃତ୍କୋଷ ରାଷ୍ଟ୍ର ଦୁର୍ଗବଲାନି ଚ ॥
ରାଜ୍ୟାଙ୍ଗାନି ପ୍ରକୃତୟଃ [୧୦] ପୌରାଣାଂ ଶ୍ରେଣୟୋ ଽପି ଚ ।
ସନ୍ଧିର୍ନା ବିଗ୍ରହୋ ଯାନମାସନଂ ଦ୍ୱୈଧମାଶ୍ରୟଃ ॥
ଷଡ଼୍ଗୁଣାଃ [୧୧] ଶକ୍ତୟସ୍ତିସ୍ରଃ ପ୍ରଭାବୋତ୍ସାହ ମନ୍ତ୍ରଜାଃ ।

---

୧ । ସାମ୍ବତ୍ସର । ଜ୍ୟୌତିଷିକ । ଦୈବଜ୍ଞ । ଗଣକ । ମୌହୂର୍ତ୍ତିକ । ମୌହୂର୍ତ୍ତ । ଜ୍ଞାନୀ । କାର୍ତ୍ତାନ୍ତିକ ଏ ଆଠନାମ ଜ୍ୟୋତିଷବେତ୍ତାର ।
୨ । ତାନ୍ତ୍ରିକ । ଜ୍ଞାତସିଦ୍ଧାନ୍ତ ଏ ଦୁଇନାମ ଶାସ୍ତ୍ରତତ୍ତ୍ୱଜ୍ଞର ।
୩ । ସତ୍ରିନ୍ । ଗୃହପତି ଏ ଦୁଇନାମ ଗୃହସ୍ଥର ।
୪ । ଲିପିକର । ଅକ୍ଷରଚଣ । ଅକ୍ଷରଚୁଞ୍ଚୁ । ଲେଖକ ଏ ଚାରିନାମ ଲେଖକର ।
୫ । ଲିଖିତ । ଅକ୍ଷରସଂସ୍ଥାନ । ଲିପି । ଲିବି ଏ ଚାରିନାମ ଲେଖାର ।
୬ । ସନ୍ଦେଶହର । ଦୂତ ଏ ଦୁଇନାମ ଦୂତର ।
୭ । ଦୂତକର୍ମକୁ ଦୂତ୍ୟ କହି ।
୮ । ଅଧ୍ୱନୀନ । ଅଧ୍ୱଗ । ଅଧ୍ୱନ୍ୟ । ପାନ୍ଥ । ପଥିକ ଏ ପାଞ୍ଚନାମ ପଥିକର ।
୯ । ରାଜ୍ୟାଙ୍ଗ । ପ୍ରକୃତି ଏ ଦୁଇନାମ ରାଜ୍ୟାଙ୍ଗର ।
୧୦ । ସନ୍ଧି । ବିଗ୍ରହ । ଯାନ । ଆସନ । ଦ୍ୱୈଧ । ଆଶ୍ରୟ ଏ ଛଅନାମ ରାଜାର ଛଅଗୁଣର ।
୧୧ । ପ୍ରଭାବ । ଉତ୍ସାହ । ମନ୍ତ୍ର ଏ ତିନିନାମ ରାଜାର ଶକ୍ତିର ।

[୧] କ୍ଷୟଃ ସ୍ଥାନଂ ଚ ବୃଦ୍ଧିଶ୍ଚ ତ୍ରିବର୍ଗୋ ନୀତିବେଦିନାଂ ॥
[୨] ସ ପ୍ରତାପଃ ପ୍ରଭାବଶ୍ଚ ଯତ୍ତେଜଃ କୋଷଦଣ୍ଡଜଂ ।
[୩] ଭେଦୋ ଦଣ୍ଡଃ ସାମ ଦାନମିତ୍ୟୁପାୟଚତୁଷ୍ଟୟଂ ॥
[୪] ସାହସଂ ତୁ ଦମୋ ଦଣ୍ଡ [୫] ସାମ ସାନ୍ତ୍ୱ [୬] ମଥୋ ସମୌ ।
ଭେଦୋପଜାପ [୭] ଉପଧା ଧର୍ମ୍ମାଦ୍ୟୈର୍ଯତ୍ପରୀକ୍ଷଣଂ ॥
ପଞ୍ଚତ୍ରିଷୁ [୮] ଷଡ଼କ୍ଷୀଣୋ ଯସ୍ତୃତୀୟାଦ୍ୟଗୋଚରଃ ।
[୯] ବିବିକ୍ତ ବିଜନଚ୍ଛନ୍ନ ନିଃଶଲାକାସ୍ତଥା ରହଃ ॥
ରହଶ୍ଚୋପାଂଶୁ ଚାଲିଙ୍ଗେ [୧୦] ରହସ୍ୟଂ ତଦ୍ଭବେ ତ୍ରିଷୁ ।
[୧୧] ସମୌ ବିସ୍ରମ୍ଭ ବିଶ୍ୱାସୌ [୧୨] ଭ୍ରେଷୋ ଭ୍ରଂଶୋ ଯଥୋଚିତାତ୍
[୧୩] ଅଭ୍ରେଷ ନ୍ୟାୟ କଳ୍ପାସ୍ତୁ ଦେଶରୂପଂ ସମଞ୍ଜସଂ ।

---

୧ । କ୍ଷୟ । ସ୍ଥାନ । ବୃଦ୍ଧି ଏ ତିନିନାମ ଏମାନଙ୍କ ତ୍ରିବର୍ଗର ।
୨ । ପ୍ରତାପ । ପ୍ରଭାବ ଏ ଦୁଇନାମ ରାଜାର କୋଷଦଣ୍ଡ ନିମିତ୍ତ ତେଜର ।
୩ । ଭେଦ । ଦଣ୍ଡ । ସାମନ୍ । ଦାନ ଏ ଚାରିନାମ ରାଜାଙ୍କ ଚାରିଉପାୟର ।
୪ । ସାହସ । ଦମ । ଦଣ୍ଡ ଏ ତିନିନାମ ଦଣ୍ଡର ।
୫ । ସାମନ୍ । ସାନ୍ତ୍ୱ ଏ ଦୁଇନାମ ତୃତୀୟଉପାୟ ସାମର ।
୬ । ଭେଦ । ଉପଜାପ ଏ ଦୁଇନାମ ଚତୁର୍ଥ ଉପାୟ ଭେଦର ।
୭ । ଉପଧା । ପଧା ଏ ଦୁଇନାମ ଧର୍ମାର୍ଥ କାମଦ୍ୱାରା ମନ୍ତ୍ରିମାନଙ୍କ ପରୀକ୍ଷଣର ।
୮ । ମନ୍ତ୍ରୀମାନଙ୍କର ଦୁଇ ମନ୍ତ୍ରି ସହିତ ମନ୍ତ୍ରଣାର ନାମକୁ ଅଷଡ଼କ୍ଷୀଣ କହି ।
୯ । ବିବିକ୍ତ । ବିଜନ । ଛନ୍ନ । ନିଃଶଲାକ । ରହସ୍ । ଉପାଂଶୁ ଏ ଛନାମ ନିର୍ଜନସ୍ଥାନର
୧୦ । ଗୋପନସ୍ଥାନ ଉଦ୍ଭବ କର୍ମକୁ ରହସ୍ୟ କହି ।
୧୧ । ବିସ୍ରମ୍ଭ । ବିଶ୍ୱାସ ଏ ଦୁଇନାମ ବିଶ୍ୱାସର ।
୧୨ । ଯଥୋଚିତ ଅନ୍ୟାୟ ଭ୍ରଂଶର ନାମକୁ ଭ୍ରେଷ କହି ।
୧୩ । ଅଭ୍ରେଷ । ନ୍ୟାୟ । କଳ୍ପ । ଦେଶରୂପ । ସମଞ୍ଜସ ଏ ପାଞ୍ଚନାମ ଯଥୋଚିତ ଆଚରଣର ।

[୧] ଯୁକ୍ତମୌପୟିକଂ ଲଭ୍ୟଂ ଭଜମାନାଭିନୀତବତ୍ ॥
ନ୍ୟାଯ୍ୟଂ ଚ ତ୍ରିଷୁ ଷଟ୍ [୨] ସଂପ୍ରଧାରଣା ତୁ ସମର୍ଥନଂ ।
[୩] ଅବବାଦସ୍ତୁ ନିର୍ଦ୍ଦେଶୋ ନିଦେଶଃ ଶାସନଂ ଚ ସଃ ॥
ଶିଷ୍ଟିଶ୍ଚାଜ୍ଞା ଚ [୪] ସଂସ୍ଥା ତୁ ମର୍ଯ୍ୟାଦା ଧାରଣା ସ୍ଥିତିଃ ।
[୫] ଆଗୋ ଽପରାଧୋ ମନ୍ତୁଶ୍ଚ [୬] ସମେ ଉଦ୍ଦାନ ବନ୍ଧନେ ॥
[୭] ଦ୍ୱିପାଦ୍ୟୋ ଦ୍ୱିଗୁଣୋ ଦଣ୍ଡୋ [୮] ଭାଗଧେୟଃ କରୋ ବଳିଃ ।
[୯] ଘଟ୍ଟାଦିଦେୟଂ ଶୁଳ୍କୋ ଽସ୍ତ୍ରୀ [୧୦] ପ୍ରାଭୃତଂ ତୁ ପ୍ରଦେଶନଂ ॥
ଉପାୟନ ମୁପଗ୍ରାହ୍ୟ ମୁପହାରସ୍ତଥୋପଦା ।
[୧୧] ଯୌତୁକାଦି ତୁ ଯଦ୍ଦେୟଂ ସୁଦାୟୋ ହରଣଂ ଚ ତତ୍ ॥
[୧୨] ତତ୍କାଳସ୍ତୁ ତଦାତ୍ୱଂ ସ୍ୟାତ୍ [୧୩] ଉତ୍ତରଃ କାଳ ଆୟତିଃ ।
[୧୪] ସାଂଦୃଷ୍ଟିକଂ ଫଳଂ ସଦ୍ୟ [୧୫] ଉଦର୍କଃ ଫଳମୁତ୍ତରଂ ॥

---

୧ । ଯୁକ୍ତ । ଔପୟିକ । ଲଭ୍ୟ । ଭଜମାନ । ଅଭିନୀତ । ନ୍ୟାଯ୍ୟ ଏ ଛନାମ ନ୍ୟାଯ୍ୟ
୨ । ସଂପ୍ରଧାରଣା । ସମର୍ଥନ ଏ ଦୁଇନାମ ସମର୍ଥନର । (ବସ୍ତୁର ।
୩ । ଅବବାଦ । ନିର୍ଦ୍ଦେଶ । ନିଦେଶ । ଶାସନ । ଶିଷ୍ଟି । ଆଜ୍ଞା ଏ ଛନାମ ଆଜ୍ଞାର ।
୪ । ମର୍ଯ୍ୟାଦା । ସଂସ୍ଥା । ଧାରଣା । ସ୍ଥିତି ଏ ଚାରିନାମ ମର୍ଯ୍ୟାଦାର ।
୫ । ଆଗସ୍ । ଅପରାଧ । ମନ୍ତୁ ଏ ତିନିନାମ ଅପରାଧର ।
୬ । ଉଦ୍ଦାନ । ବନ୍ଧନ ଏ ଦୁଇନାମ ବନ୍ଧନର ।
୭ । ଦ୍ୱିଗୁଣ ଦଣ୍ଡର ନାମକୁ ଦ୍ୱିପାଦ୍ୟ କହି ।
୮ । ଭାଗଧେୟ । କର । ବଳି ଏ ତିନିନାମ ରାଜସ୍ୱର ।
୯ । ଘାଟ ଇତ୍ୟାଦିରେ ଦେୟ ମାସୁଲକୁ ଶୁଳ୍କ କହି । (ରାଜଭେଟିର ।
୧୦ । ପ୍ରାଭୃତ । ପ୍ରଦେଶନ । ଉପାୟନ । ଉପଗ୍ରାହ୍ୟ । ଉପହାର । ଉପଦା ଏ ଛନାମ
୧୧ । ଦାୟ । ହରଣ । ଯୌତୁକ ଏ ତିନିନାମ ଯୌତୁକାଦି ଦେୟବସ୍ତୁର ।
୧୨ । ତତ୍କାଳ । ତଦାତ୍ୱ ଏ ଦୁଇନାମ ବର୍ତ୍ତମାନକାଳର ।
୧୩ । ଉତ୍ତରକାଳକୁ ଆୟତି କହି ।
୧୪ । ସଦ୍ୟଫଳକୁ ସାଂଦୃଷ୍ଟିକ କହି । ୧୫ । ଉତ୍ତରଫଳକୁ ଉଦର୍କ କହି ।

[୧] ଅଦୃଷ୍ଟଂ ବହ୍ନିତୋୟାଦି [୨] ଦୃଷ୍ଟଂ ସ୍ୱପରଚକ୍ରଜଂ ।
[୩] ମହୀଭୁଜା ମହୀଭୟଂ ସ୍ୱପକ୍ଷ ପ୍ରଭବଂ ଭୟଂ ॥
[୪] ପ୍ରକ୍ରିୟା ତ୍ୱଧିକାରଃ ସ୍ୟା [୫] ଚ୍ଚାମରନ୍ତୁ ପ୍ରକୀର୍ଣ୍ଣକଂ ।
[୬] ନୃପାସନଂ ଯତ୍ତଦ୍ଭଦ୍ରାସନଂ [୭] ସିଂହାସନଂ ତୁ ତତ୍ ॥
ହୈମଂ [୮] ଛତ୍ରଂ ତ୍ୱାତପତ୍ରଂ [୯] ରାଜ୍ଞସ୍ତୁ ନୃପଲକ୍ଷ୍ମ ତତ୍ ।
[୧୦] ଭଦ୍ରକୁମ୍ଭଃ ପୂର୍ଣ୍ଣକୁମ୍ଭୋ [୧୧] ଭୃଙ୍ଗାରଃ କନକାଳୁକା ॥
[୧୨] ନିବେଶଃ ଶିବିରଂ ଷଣ୍ଢେ [୧୩] ସଜ୍ଜନଂ ତୂପରକ୍ଷଣଂ ।
[୧୪] ହସ୍ତ୍ୟଶ୍ୱରଥପାଦାତଂ ସେନାଙ୍ଗଂ ସ୍ୟାଚ୍ଚତୁଷ୍ଟୟଂ ॥
[୧୫] ଦନ୍ତୀ ଦନ୍ତାବଳୋ ହସ୍ତୀ ଦ୍ୱିରଦୋଽନେକପୋ ଦ୍ୱିପଃ ।
ମତଙ୍ଗଜୋ ଗଜୋ ନାଗଃ କୁଞ୍ଜରୋ ବାରଣଃ କରୀ ॥
ଇଭଃ ସ୍ତମ୍ବେରମଃ ପଦ୍ମୀ [୧୬] ଯୂଥନାଥସ୍ତୁ ଯୂଥପଃ ।

---

୧ । ଅଗ୍ନି ଜଳାଦି ଜନିତ ଭୟକୁ ଅଦୃଷ୍ଟ କହି ।
୨ । ପରଚକ୍ର ଜନିତ ଭୟକୁ ଦୃଷ୍ଟ କହି । ୩ । ସ୍ୱଜନଜନିତ ଭୟକୁ ଅନ୍ତର୍ଭୟ କହି ।
୪ । ପ୍ରକ୍ରିୟା । ଅଧିକାର ଏ ଦୁଇନାମ ରାଜାଙ୍କ ଚାମର ବାହନାଦି ଧାରଣର ।
୫ । ଚାମର । ପ୍ରକୀର୍ଣ୍ଣକ ଏ ଦୁଇନାମ ଚାମରର ।
୬ । ନୃପାସନ । ଭଦ୍ରାସନ ଏ ଦୁଇନାମ ରାଜାଙ୍କ ଆସନର ।
୭ । ସ୍ୱର୍ଣ୍ଣମୟ ରାଜାସନର ନାମକୁ ସିଂହାସନ କହି ।
୮ । ଛତ୍ର । ଆତପତ୍ର ଏ ଦୁଇନାମ ଛତାର । ୯ । ରାଜଛତ୍ରର ନାମକୁ ନୃପଲକ୍ଷ୍ମ କହି ।
୧୦ । ଭଦ୍ରକୁମ୍ଭ । ପୂର୍ଣ୍ଣକୁମ୍ଭ ଏ ଦୁଇନାମ ପୂର୍ଣ୍ଣକୁମ୍ଭର ।
୧୧ । ଭୃଙ୍ଗାର । କନକାଳୁକା ଏ ଦୁଇନାମ ସ୍ୱର୍ଣ୍ଣନିର୍ମିତ ଭୃଙ୍ଗାରର ।
୧୨ । ନିବେଶ । ଶିବିର ଏ ଦୁଇନାମ ଛାଉଣିର ।
୧୩ । ସଜ୍ଜନ । ଉପରକ୍ଷଣ ଏ ଦୁଇନାମ ରକ୍ଷଣର ।
୧୪ । ହସ୍ତୀ । ଅଶ୍ୱ । ରଥ । ପଦାତି ଏ ଚାରିନାମ ସେନାଙ୍ଗର ।
୧୫ । ଦନ୍ତିନ୍ । ଦନ୍ତାବଳ । ହସ୍ତିନ୍ । ଦ୍ୱିରଦ । ଅନେକପ । ଦ୍ୱିପ । ମତଙ୍ଗଜ । ଗଜ । ନାଗ
କୁଞ୍ଜର । ବାରଣ । କରିନ୍ । ଇଭ । ସ୍ତମ୍ବେରମ । ପଦ୍ମିନ୍ ଏ ପନ୍ଦର ନାମ ହସ୍ତୀର ।
୧୬ । ଯୂଥନାଥ । ଯୂଥପ ଏ ଦୁଇନାମ ପ୍ରଧାନ ହସ୍ତୀର ।

[୧] ମଦୋତ୍କଟୋ ମଦକଲଃ [୨] କଲଭଃ କରିଶାବକଃ ।
[୩] ପ୍ରଭିନ୍ନୋ ଗର୍ଜିତୋ ମତ୍ତଃ [୪] ସମାବୃତ୍ତାନ୍ତୁ ନିର୍ମଦୌ ।
[୫] ହାସ୍ତିକଂ ଗଜତା ବୃନ୍ଦେ [୬] କରିଣୀ ଧେନୁକା ବଶା ॥
[୭] ଗଣ୍ଡଃ କଟୋ [୮] ମଦୋ ଦାନଂ [୯] ବମଥୁଃ କରଶୀକରଃ
[୧୦] କୁମ୍ଭୌ ତୁ ପିଣ୍ଡୌ ଶିରସ [୧୧] ସ୍ତୟୋର୍ମଧ୍ୟେ ବିଦୁଃ ପୁମାନ୍ ॥
[୧୨] ଅବଗ୍ରହୋ ଲଲାଟଂ ସ୍ୟା [୧୩] ଦୀଷିକା ତ୍ୱକ୍ଷିକୂଟକଂ ।
[୧୪] ଅପାଙ୍ଗଦେଶୋ ନିର୍ଯ୍ୟାଣଂ [୧୫] କର୍ଣ୍ଣମୂଳଂ ତୁ ଚୂଳକା ।
[୧୬] ଅଧଃ କୁମ୍ଭସ୍ୟ ବାହିତ୍ଥଂ [୧୭] ପ୍ରତିମାନମଧୋଽସ୍ୟ ଯତ୍ ।
[୧୮] ଆସନଂ ସ୍କନ୍ଧଦେଶଃ ସ୍ୟାତ୍ [୧୯] ପଦ୍ମକଂ ବିନ୍ଦୁଜାଲକଂ ।

---

୧ । ମଦୋତ୍କଟ । ମଦକଲ ଏ ଦୁଇନାମ ମଦମତ୍ତ ହସ୍ତିର ।
୨ । କଲଭ । କରିଶାବକ ଏ ଦୁଇନାମ ହସ୍ତି ଛୁଆର ।
୩ । ପ୍ରଭିନ୍ନ । ଗର୍ଜିତ । ମତ୍ତ ଏ ତିନିନାମ ମତ୍ତହସ୍ତିର ।
୪ । ଉଦ୍ବାନ୍ତ । ନିର୍ମଦ ଏ ଦୁଇନାମ ମତ୍ତଛାଡ଼ିଥିବା ହସ୍ତିର ।
୫ । ହାସ୍ତିକ । ଗଜତା ଏ ଦୁଇନାମ ହସ୍ତିସମୂହର ।
୬ । କରିଣୀ । ଧେନୁକା । ବଶା ଏ ତିନିନାମ ହସ୍ତିଣୀର ।
୭ । ଗଣ୍ଡ । କଟ ଏ ଦୁଇନାମ ମଦନିର୍ଝର ସ୍ଥାନର ।
୮ । ମଦ । ଦାନ ଏ ଦୁଇନାମ ହସ୍ତିମଦର ।
୯ । ବମଥୁ । କରଶୀକର ଏ ଦୁଇନାମ ଶୁଣ୍ଡନିର୍ଗତ ଜଳକଣାର ।
୧୦ । ହସ୍ତି ମସ୍ତକସ୍ଥିତ କୁମ୍ଭକୁ କୁମ୍ଭ କହି । ୧୧ କୁମ୍ଭଦ୍ୱୟର ମଧ୍ୟଭାଗକୁ ବିଦୁ କହି ।
୧୨ । ଅବଗ୍ରହ । ଲଲାଟ ଏ ଦୁଇନାମ ହସ୍ତି ଲଲାଟର ।
୧୩ । ହସ୍ତି ଚକ୍ଷୁଗୋଳକୁ ଈଷିକା କହି ।
୧୪ । ହସ୍ତିଚକ୍ଷୁର ପ୍ରାନ୍ତଦ୍ୱୟର ନାମକୁ ନିର୍ଯ୍ୟାଣ କହି ।
୧୫ । ହସ୍ତି କର୍ଣ୍ଣମୂଳକୁ ଚୂଳକା କହି । ୧୬ । ହସ୍ତିକୁମ୍ଭର ଅଧୋଭାଗକୁ ବାହିତ୍ଥ କହି ।
୧୭ । ତାହାର ଅଧୋଭାଗକୁ ପ୍ରତିମାନ କହି ।
୧୮ । ଆସନ । ସ୍କନ୍ଧଦେଶ ଏ ଦୁଇନାମ ହସ୍ତି ସ୍କନ୍ଧଦେଶର
୧୯ । ପଦ୍ମକ । ବିନ୍ଦୁଜାଲକ ଏ ଦୁଇନାମ ହସ୍ତିମୁଖ ଓ ଗାତ୍ର ବିନ୍ଦୁସମୂହର ।

[୧] ପକ୍ଷଭାଗଃ ପାର୍ଶ୍ୱଭାଗୋ [୨] ଦନ୍ତଭାଗସ୍ତୁ ଯୋଽଗ୍ରତଃ ।
[୩।୪] ଦ୍ୱୌ ପୂର୍ବପଶ୍ଚାଜ୍ଜଙ୍ଘାଦିଦେଶୌ ଗାତ୍ରାବରେ କ୍ରମାତ୍ ॥
[୫] ତୋତ୍ରଂ ବୈଣୁକ [୬] ମାଲାନଂ ବନ୍ଧସ୍ତମ୍ଭେ [୭] ଽଥ ଶୃଙ୍ଖଲେ
ଅନ୍ଦୁକୋ ନିଗଡୋ ଽସ୍ତ୍ରୀ ସ୍ୟା [୮] ଦଙ୍କୁଶୋଽସ୍ତ୍ରୀ ସୃଣିଃ ସ୍ତ୍ରିୟାଂ
[୯] ଦୂଷ୍ୟା କକ୍ଷ୍ୟା ବରତ୍ରା ସ୍ୟାତ୍ [୧୦] କଳ୍ପନା ସଜ୍ଜନା ସମେ ।
[୧୧] ପ୍ରବେଣ୍ୟାସ୍ତରଣଂ ବର୍ଣ୍ଣଃ ପରିସ୍ତୋମଃ କୁଥୋ ଦ୍ୱୟୋଃ ॥
[୧୨] ବୀତଂ ତ୍ୱସାରଂ ହସ୍ତ୍ୟଶ୍ୱଂ [୧୩] ବାରୀ ତୁ ଗଜବନ୍ଧନୀ ।
[୧୪] ଘୋଟକେ ପୀତି ତୁରଗ ତୁରଙ୍ଗାଶ୍ୱ ତୁରଙ୍ଗମାଃ ॥
ବାଜି ବାହାର୍ବ ଗନ୍ଧର୍ବ ହୟ ସୈନ୍ଧବ ସପ୍ତୟଃ ।
[୧୫] ଆଜାନେୟାଃ କୁଳୀନାଃ ସ୍ୟୁ [୧୬] ର୍ବିନୀତାଃ ସାଧୁବାହିନଃ ॥

---

୧ । ପକ୍ଷଭାଗ । ପାର୍ଶ୍ୱଭାଗ ଏ ଦୁଇନାମ ହସ୍ତିର ପାର୍ଶ୍ୱଭାଗର ।
୨ । ହସ୍ତିର ଅଗ୍ରଭାଗକୁ ଦନ୍ତଭାଗ କହି ।
୩ । ହସ୍ତିର ପୂର୍ବଜଙ୍ଘା ପ୍ରଭୃତି ଦେଶକୁ ଗାତ୍ର କହି ।
୪ । ହସ୍ତିର ପଶ୍ଚିମଜଙ୍ଘା ପ୍ରଭୃତି ଦେଶକୁ ଅବର କହି ।
୫ । ତୋତ୍ର । ବୈଣୁକ ଏ ଦୁଇନାମ ହସ୍ତୀ ପ୍ରେରଣ ନିମିତ୍ତ ଲୌହାଗ୍ରବେଣୁଦଣ୍ଡର ।
୬ । ଆଲାନ । ବନ୍ଧସ୍ତମ୍ଭ ଏ ଦୁଇନାମ ହସ୍ତିବନ୍ଧନ ସ୍ତମ୍ଭର ।
୭ । ଶୃଙ୍ଖଳ । ଅନ୍ଦୁକ । ନିଗଡ ଏ ତିନିନାମ ହସ୍ତିବନ୍ଧନ ଶିକୁଳିର ।
୮ । ଅଙ୍କୁଶ । ସୃଣି ଏ ଦୁଇନାମ ହସ୍ତୀ ଚଳନ ନିମିତ୍ତ ଲୌହାଦି ନିର୍ମିତ ଅସ୍ତ୍ରବିଶେଷର ।
୯ । ଦୂଷ୍ୟା । କକ୍ଷ୍ୟା । ବରତ୍ରା ଏ ତିନିନାମ ହସ୍ତୀ ମଧ୍ୟଦେଶବନ୍ଧନ ଚର୍ମର ।
୧୦ । କଳ୍ପନା । ସଜ୍ଜନା । ଏ ଦୁଇନାମ ହସ୍ତିସଜ୍ଜାର ।  ( ଚିତ୍ରବର୍ଣ୍ଣ କମ୍ବଳର ।
୧୧ । ପ୍ରବେଣୀ । ଆସ୍ତରଣ । ବର୍ଣ୍ଣ । ପରିସ୍ତୋମ । କୁଥ ଏ ପାଞ୍ଚନାମ ହସ୍ତିପୃଷ୍ଠଦେଶସ୍ଥିତ
୧୨ । ପୂର୍ବରେ ଅକଥିତ ହସ୍ତୀ ଏବଂ ଘୋଟକର ନାମକୁ ବୀତ କହି ।
୧୩ । ବାରୀ । ଗଜବନ୍ଧନୀ ଏ ଦୁଇନାମ ହସ୍ତିଶାଳାର ।
୧୪ । ଘୋଟକ । ପୀତି । ତୁରଗ । ତୁରଙ୍ଗ । ଅଶ୍ୱ । ତୁରଙ୍ଗମ । ବାଜିନ୍ । ବାହ । ଅର୍ବନ୍
ଗନ୍ଧର୍ବ । ହୟ । ସୈନ୍ଧବ । ସପ୍ତି ଏ ତେରନାମ ଘୋଟକର ।
୧୫ । ଆଜାନେୟ । କୁଳୀନ ଏ ଦୁଇନାମ ଉତ୍ତମ ଘୋଟକର ।
୧୬ । ବିନୀତ । ସାଧୁବାହିନ୍ ଏ ଦୁଇନାମ ଶୋଭନ ବହନସମର୍ଥ ଘୋଟକର ।

[୧] ବାନାୟୁଜାଃ ପାରସିକାଃ କାମ୍ବୋଜା ବାହ୍ଲିକା ହୟାଃ ।
[୨] ଯୟୁରଶ୍ୱୋ ଽଶ୍ୱମେଧୀୟୋ [୩] ଜବନସ୍ତୁ ଜବାଧିକଃ ॥
[୪] ପୃଷ୍ଠ୍ୟଃ ସ୍ଥୌରୀ [୫] ସିତଃ କର୍କୋ [୬] ରଥ୍ୟୋ ବୋଢ଼ା ରଥସ୍ୟ ଯଃ
[୭] ବାଲଃ କିଶୋରେ [୮] ବାମ୍ୟଶ୍ୱା ବଡ଼ବା [୯] ବାଡ଼ବଙ୍ଗଣେ ॥
[୧୦] ତ୍ରିଷ୍ଟାଶ୍ୱୀନଂ ଯଦଶ୍ୱେନଂ ଦିନେନୈକେନ ଗମ୍ୟତେ ।
[୧୧] କଶ୍ୟନ୍ତୁ ମଧ୍ୟମଶ୍ୱାନାଂ [୧୨] ହେଷା ହ୍ରେଷା ଚ ନିସ୍ୱନଃ ॥
[୧୩] ନିଗାଲସ୍ତୁ ଗଲୋଦ୍ଦେଶୋ [୧୪] ବୃନ୍ଦେ ତ୍ୱଶ୍ୱୀୟମାଶ୍ୱବତ୍ ।
[୧୫] ଅସ୍କନ୍ଦିତଂ ଧୌରିତକଂ ରେଚିତଂ ବଲ୍ଗିତଂ ପ୍ଲୁତଂ ।
[୧୬] ଗତୟୋ ଽମୂଃ ପଞ୍ଚ ଧାରା [୧୭] ଘୋଣା ତୁ ପ୍ରୋଥମସ୍ତ୍ରିୟାଂ ।

---

୧ । ବନାୟୁଜ । ପାରସିକ । କାମ୍ବୋଜ । ବାହ୍ଲିକ ଏ ଚାରିନାମ ଦେଶବିଶେଷର ।
୨ । ଯୟୁ । ଅଶ୍ୱମେଧୀୟ ଏ ଦୁଇନାମ ଅଶ୍ୱମେଧଯଜ୍ଞଅଶ୍ୱର ।
୩ । ଜବନ । ଜବାଧିକ ଏ ଦୁଇନାମ ବେଗାଧିକ ଅଶ୍ୱର ।
୪ । ପୃଷ୍ଠ୍ୟ । ସ୍ଥୌରିନ୍ ଏ ଦୁଇନାମ ବୋଝର ଘୋଡ଼ାର ।
୫ । ଶୁକ୍ଲବର୍ଣ୍ଣ ଅଶ୍ୱକୁ କର୍କ କହି ।
୬ । ରଥବାହକ ଅଶ୍ୱକୁ ରଥ୍ୟ କହି ।
୭ । ବାଲ । କିଶୋର ଏ ଦୁଇନାମ ଅଶ୍ୱ ଶିଶୁର ।
୮ । ବାମୀ । ଅଶ୍ୱା । ବଡ଼ବା ଏ ତିନିନାମ ଅଶ୍ୱଭାର୍ଯ୍ୟାର ।
୯ । ଅଶ୍ୱର ସ୍ତ୍ରୀସମୂହକୁ ବାଡବ କହି ।
୧୦ । ଅଶ୍ୱର ଏକଦିନ ଗମ୍ୟ ପଥକୁ ଆଶ୍ୱୀନ କହି ।
୧୧ । ଅଶ୍ୱର ମଧ୍ୟଭାଗକୁ କଶ୍ୟ କହି ।
୧୨ । ହେଷା । ହ୍ରେଷା ଏ ଦୁଇନାମ ଅଶ୍ୱଧ୍ୱନିର ।
୧୩ । ନିଗାଲ । ଗଲୋଦ୍ଦେଶ ଏ ଦୁଇନାମ ଘୋଡ଼ାର ଗଳାର ।
୧୪ । ଅଶ୍ୱୀୟ । ଆଶ୍ୱ ଏ ଦୁଇନାମ ଅଶ୍ୱସମୂହର । [ଗତିବିଶେଷର ।
୧୫ । ଆସ୍କନ୍ଦିତ । ଧୌରିତକ । ରେଚିତ । ବଲ୍ଗିତ । ପ୍ଲୁତ ଏ ପାଞ୍ଚନାମ ଅଶ୍ୱର
୧୬ । ଅଶ୍ୱର ସାଧାରଣ ଗତିର ନାମକୁ ଧାରା କହି ।
୧୭ । ଘୋଣା । ପ୍ରୋଥ ଏ ଦୁଇନାମ ଅଶ୍ୱନାସିକାର ।

[୧] କବିକା ତୁ ଖଲୀନୋଽସ୍ତ୍ରୀ [୨] ଶଫଂ କ୍ଲୀବେ ଖୁରଃ ପୁମାନ୍ ॥
[୩] ପୁଚ୍ଛୋଽସ୍ତ୍ରୀ ଲୂମଲାଙ୍ଗୂଲେ ବାଲହସ୍ତସ୍ତୁ ବାଲଧିଃ ।
[୪] ତ୍ରିଷୁପ୍ରାବୃତ୍ତ ଲୁଠିତୌ ପରାବୃତ୍ତେ ମୁହୁର୍ଭୁବି ॥
[୫] ଯାନେ ଚକ୍ରିଣି ଯୁଦ୍ଧାର୍ଥେ ଶତାଙ୍ଗଃ ସ୍ୟନ୍ଦନୋ ରଥଃ ।
[୬] ଅସୌ ପୁଷ୍ପରଥଶ୍ଚକ୍ର ଯାନଂ ନ ସମରାୟ ଯତ୍ ॥
[୭] କର୍ଣ୍ଣୀରଥଃ ପ୍ରବହଣଂ ଡୟନଂ ଚ ସମଂ ତ୍ରୟଂ ।
[୮] କ୍ଲୀବେଽନଃ ଶକଟୋଽସ୍ତ୍ରୀ ସ୍ୟା [୯] ଦ୍ଗନ୍ତ୍ରୀ କମ୍ବଳିବାହ୍ୟକଂ ॥
[୧୦] ଶିବିକା ଯାପ୍ୟଯାନଂ ସ୍ୟା [୧୧] ଦ୍ଦୋଲା ପ୍ରେଙ୍ଖାଦିକାଃ ସ୍ତ୍ରିୟାଂ
[୧୨] ଉଭୌ ତୁ ଦ୍ୱୈପ ବୈୟାଘ୍ରୌ ଦ୍ୱୀପିଚର୍ମାବୃତେ ରଥେ ॥
[୧୩] ପାଣ୍ଡୁକମ୍ବଳସମ୍ବୀତଃ ସ୍ୟନ୍ଦନଃ ପାଣ୍ଡୁକମ୍ବଳୀ ।

---

୧ । କବିକା । ଖଲୀନ ଏ ଦୁଇନାମ ଅଶ୍ୱର ଗଳେଦେଉଥିବା କଡ଼ିଆଳର ।
୨ । ଶଫ । ଖୁର ଏ ଦୁଇନାମ ସାମାନ୍ୟ ଖୁରର ।
୩ । ପୁଚ୍ଛ । ଲୂମ । ଲାଙ୍ଗୂଳ । ବାଳହସ୍ତ । ବାଳଧି ଏ ପାଞ୍ଚନାମ ସାମାନ୍ୟ ଲାଙ୍ଗୂଳର ।
୪ । ପ୍ରାବୃତ୍ତ । ଲୁଣ୍ଠିତ ଏ ଦୁଇନାମ ପୁନଃ୨ ଲୁଣ୍ଠନଶୀଳ ଅଶ୍ୱର ।
୫ । ଶତାଙ୍ଗ । ସ୍ୟନ୍ଦନ । ରଥ ଏ ତିନିନାମ ଯୁଦ୍ଧାର୍ଥ ଚକ୍ରଯୁକ୍ତ ଯାନର ।
୬ । ଯୁଦ୍ଧାର୍ଥଭିନ୍ନ ଚକ୍ରରଥକୁ ପୁଷ୍ପରଥ କହି ।
୭ । କର୍ଣ୍ଣୀରଥ । ପ୍ରବହଣ । ଡୟନ ଏ ତିନିନାମ ଆଚ୍ଛାଦିତ ରଥର ।
୮ । ଅନସ୍ । ଶକଟ ଏ ଦୁଇନାମ ଗଡ଼ର ।
୯ । ଗୋରୁଗାଡ଼ି ନାମକୁ ଗନ୍ତ୍ରୀ କହି ।
୧୦ । ଶିବିକା । ଯାପ୍ୟଯାନ ଏ ଦୁଇନାମ ବାହକବେଷ୍ଟିତ ଡୋଲିର ।
୧୧ । ଦୋଳା । ପ୍ରେଙ୍ଖା ଏ ଦୁଇନାମ ଦୋଳର ।
୧୨ । ଦ୍ୱୈପ । ବୈୟାଘ୍ର ଏ ଦୁଇନାମ ବ୍ୟାଘ୍ରଚର୍ମ୍ମାବୃତ ରଥର ।
୧୩ । ପାଣ୍ଡୁବର୍ଣ୍ଣକମ୍ବଳରେ ଆବୃତରଥକୁ ପାଣ୍ଡୁକମ୍ବଳୀ କହି ।

[୧] ରଥେ କାମ୍ବଲ ବାସ୍ତ୍ରାଦ୍ୟାଃ କମ୍ବଲାଦିଭିରାବୃତେ ।
ତ୍ରିଷୁ ଦ୍ୱୈପାଦଯ୍ୟୋ [୨] ରଥ୍ୟା ରଥକଡ୍ୟା ରଥବ୍ରଜେ ।
[୩] ଧୂଃ ସ୍ତ୍ରୀ କ୍ଲୀବେ ଯାନମୁଖଂ ସ୍ୟା [୪] ଦ୍ରଥାଙ୍ଗମପସ୍କରଃ ।
[୫] ଚକ୍ରଂ ରଥାଙ୍ଗଂ [୬] ତସ୍ୟାନ୍ତେ ନେମିଃ ସ୍ତ୍ରୀସ୍ୟାତ୍ ପ୍ରଧିଃ ପୁମାନ୍
[୭] ପିଣ୍ଡିକା ନାଭି [୮] ରକ୍ଷାଗ୍ରକୀଲକେ ତୁ ଦ୍ୱୟୋରଣିଃ ।
[୯] ରଥଗୁପ୍ତିର୍ବରୂଥୋ ନା [୧୦] କୂବରସ୍ତୁ ଯୁଗନ୍ଧରଃ ।
[୧୧] ଅନୁକର୍ଷୋ ଦାର୍ବଧଃସ୍ଥଂ [୧୨] ପ୍ରାସଙ୍ଗୋ ନା ଯୁଗାଦ୍ୟୁଗଃ ॥
[୧୩] ସର୍ବଂ ସ୍ୟାଦ୍ୱାହନଂ ଯାନଂ ଯୁଗ୍ୟଂ ପତ୍ରଂ ଚ ଧୋରଣଂ ।
[୧୪] ପରମ୍ପରାବାହନଂ ଯତ୍ତଦ୍ୱୈନୀତକମସ୍ତ୍ରିୟାଂ ॥
[୧୫] ଆଧୋରଣା ହସ୍ତିପକା ହସ୍ତ୍ୟାରୋହା ନିଷାଦିନଃ ।

---

୧ । କାମ୍ବଳ । ବାସ୍ତ୍ର ଏ ଦୁଇନାମ କମ୍ବଳାଦିଦ୍ୱାରା ଆବୃତ ରଥର ।
୨ । ରଥ୍ୟା । ରଥକଡ୍ୟା ଏ ଦୁଇନାମ ରଥସମୂହର ।
୩ । ଧୂର । ଯାନମୁଖ ଏ ଦୁଇନାମ ରଥାଦି ଅଗ୍ରଭାଗର ।
୪ । ରଥାଙ୍ଗ । ଅପସ୍କର ଏ ଦୁଇନାମ ରଥ ଦୁଇ ଚକ୍ରର ।
୫ । ଚକ୍ର । ରଥାଙ୍ଗ ଏ ଦୁଇନାମ ଚଥଚକ୍ରର ।
୬ । ନେମି । ପ୍ରଧି ଏ ଦୁଇନାମ ଚକ୍ରର ଅନ୍ତଭାଗର ।
୭ । ପିଣ୍ଡିକା । ନାଭି ଏ ଦୁଇନାମ ରଥମଧ୍ୟବର୍ତ୍ତିଚକ୍ରାକାର କାଷ୍ଠର ।
୮ । ଅକ୍ଷାଗ୍ରକୀଲକ । ଅଣି ଏ ଦୁଇନାମ ରଥର ଅଗ୍ରବର୍ତ୍ତୀ କିଲର ।
୯ । ରଥଗୁପ୍ତି । ବରୂଥ ଏ ଦୁଇନାମ ରଥର ଗୁପ୍ତଚର୍ମର ।
୧୦ । କୂବର । ଯୁଗନ୍ଧର ଏ ଦୁଇନାମ ରଥର ଅଶ୍ୱବନ୍ଧନ କାଷ୍ଠର ।
୧୧ । ରଥର ଅଧୋଭାଗସ୍ଥିତ କାଷ୍ଠକୁ ଅନୁକର୍ଷ କହି ।
୧୨ । ରଥର ଅନ୍ତର୍ବର୍ତ୍ତୀ କ୍ଷୁଦ୍ରଯୁଗକୁ ପ୍ରାସଙ୍ଗ କହି ।
୧୩ । ବାହନ । ଯାନ । ଯୁଗ୍ୟ । ପତ୍ର । ଧୋରଣ ଏ ପାଞ୍ଚନାମ ସାମାନ୍ୟ ବାହନର ।
୧୪ । ପରମ୍ପରା ବାହନର ନାମକୁ ବୈନୀତ କହି ।
୧୫ । ଆଧୋରଣ । ହସ୍ତିପକ । ହସ୍ତ୍ୟାରୋହ । ନିଷାଦିନ୍ ଏ ଚାରିନାମ ହାତୀ ମାହୁନ୍ତର ।

[୧] ନିୟନ୍ତା ପ୍ରାଜିତା ଯନ୍ତା ସୂତଃ କ୍ଷତ୍ତା ଚ ସାରଥିଃ ॥
ସବ୍ୟେଷ୍ଠୃ ଦକ୍ଷିଣସ୍ଥୌ ଚ ସଂଜ୍ଞା ରଥକୁଟୁମ୍ବିନଃ ।
[୨] ରଥିନଃ ସ୍ୟନ୍ଦନାରୋହାଃ [୩] ଅଶ୍ୱାରୋହାସ୍ତୁ ସାଦିନଃ ।
[୪] ଭଟା ଯୋଧାଶ୍ଚ ଯୋଦ୍ଧାରଃ [୫] ସେନାରକ୍ଷାସ୍ତୁ ସୈନିକାଃ ।
[୬] ସେନାୟାଂ ସମବେତା ଯେ ସୈନ୍ୟାସ୍ତେ ସୈନିକାଶ୍ଚ ତେ ।
[୭] ବଳିନୋ ଯେ ସହସ୍ରେଣ ସାହସ୍ରାସ୍ତେ ସହସ୍ରିଣଃ ।
[୮] ପରିଧିସ୍ଥଃ ପରିଚରଃ [୯] ସେନାନୀ ର୍ବାହିନୀପତିଃ ।
[୧୦] କଞ୍ଚୁକୋ ବାରବାଣୋ ଽସ୍ତ୍ରୀ [୧୧] ଯତ୍ତୁ ମଧ୍ୟେ ସ କଞ୍ଚୁକାଃ
ବଧ୍ନନ୍ତି ତତ୍ସାରସନମଧିକାଙ୍ଗୋ [୧୨] ଽଥ ଶୀର୍ଷକଂ ।
ଶୀର୍ଷଣ୍ୟଂ ଚ ଶିରସ୍ତ୍ରେ [୧୩] ଽଥ ତନୁତ୍ରଂ ବର୍ମ୍ମ ଦଂଶନଂ ।
ଉରଶ୍ଛଦଃ କଙ୍କଟକୋ ଜାଗରଃ କବଚୋ ଽସ୍ତ୍ରିୟାଂ ॥

---

୧ । ନିୟନ୍ତୃ । ପ୍ରାଜିତୃ । ଯନ୍ତୃ । ସୂତ । କ୍ଷତ୍ତୃ । ସାରଥି । ସବ୍ୟେଷ୍ଠୃ । ଦକ୍ଷିଣସ୍ଥ । ଏ ଅଠ-ନାମ ସାରଥିର ।

୨ । ରଥିନ୍ । ସ୍ୟନ୍ଦନାରୋହ ଏ ଦୁଇନାମ ରଥସ୍ଥିତ ପୁରୁଷର ।

୩ । ଅଶ୍ୱାରୋହ । ସାଦିନ୍ ଏ ଦୁଇନାମ ଅଶ୍ୱ ଉପରେ ସ୍ଥିତ ପୁରୁଷର ।

୪ । ଭଟ । ଯୋଧ । ଯୋଦ୍ଧୃ ଏ ତିନିନାମ ଯୋଦ୍ଧାର ।

୫ । ସେନାରକ୍ଷ । ସୈନିକ ଏ ଦୁଇନାମ ସେନାରକ୍ଷକର ।

୬ । ସୈନ୍ୟ । ସୈନିକ ଏ ଦୁଇନାମ ସେନାରେ ମିଳିତ ବ୍ୟକ୍ତିର ।

୭ । ସାହସ୍ର । ସହସ୍ରିନ୍ ଏ ଦୁଇନାମ ସହସ୍ରସଂଖ୍ୟାପରିମିତ ସୈନ୍ୟବନ୍ତୁବାଳା ପୁରୁଷର ।

୮ । ପରିଧିସ୍ଥ । ପରିଚର ଏ ଦୁଇନାମ ପ୍ରବରକ୍ଷକର ।

୯ । ସେନାନୀ । ବାହିନୀପତି ଏ ଦୁଇନାମ ସେନାପତିର ।

୧୦ । କଞ୍ଚୁକ । ବାରବାଣ ଏ ଦୁଇନାମ ସେନାର ବସ୍ତ୍ରାଦିନିର୍ମିତ ଅଙ୍ଗରଖାର ।

୧୧ । ସାରସନ । ଅଧିକାଙ୍ଗ ଏ ଦୁଇନାମ ସେନାର କଟିବନ୍ଧର ।

୧୨ । ଶୀର୍ଷକ । ଶୀର୍ଷଣ୍ୟ । ଶିରସ୍ତ୍ର ଏ ତିନିନାମ ସେନାମାନଙ୍କ ଟୋପିର ।

୧୩ । ତନୁତ୍ର । ବର୍ମ୍ମନ୍ । ଦଂଶନ । ଉରଶ୍ଛଦ । କଙ୍କଟକ । ଜାଗର । କବଚ ଏ ସାତ-ନାମ ସାଞ୍ଜୁର ।

[୧] ଆମୁକ୍ତଃ ପ୍ରତିମୁକ୍ତଶ୍ଚ ପିନଦ୍ଧଶ୍ଚାପିନଦ୍ଧ ବତ୍ ।
[୨] ସନ୍ନଦ୍ଧୋ ବର୍ମିତଃ ସଜ୍ଜୋ ଦଂଶିତୋ ବ୍ୟୂଢ଼କଙ୍କଟଃ ॥
ତ୍ରିଷ୍ୱାମୁକ୍ତାଦୟୋ [୩] ବର୍ମଭୃତାଂ କାବଚିକଂ ଗଣେ ।
[୪] ପଦାତି ପତ୍ତି ପଦଗ ପାଦାତିକ ପଦାଜୟଃ ॥
ପଦ୍ଗଶ୍ଚ ପାଦିକଶ୍ଚା [୫] ଽଥ ପାଦାତଂ ପତ୍ତିସଂହତିଃ ।
[୬] ଶସ୍ତ୍ରାଜୀବେ କାଣ୍ଡପୃଷ୍ଠାୟୁଧୀୟାୟୁଧିକାଃ ସମାଃ ॥
[୭] କୃତହସ୍ତଃ ସୁପ୍ରୟୋଗବିଶିଖଃ କୃତପୁଙ୍ଖ ବତ୍ ।
[୮] ଅପରାଦ୍ଧପୃଷତ୍କୋଽସୌ ଲକ୍ଷ୍ୟାଦ୍ୟସ୍ୟଚ୍ୟୁତଃ ସାୟକଃ ।
[୯] ଧନ୍ୱୀ ଧନୁଷ୍ମାନ୍ ଧାନୁଷ୍କୋ ନିଷଙ୍ଗ୍ୟସ୍ତ୍ରୀ ଧନୁର୍ଦ୍ଧରଃ ।
[୧୦] ସ୍ୟାତ୍କାଣ୍ଡବାଂସ୍ତୁ କାଣ୍ଡୀରଃ [୧୧] ଶାକ୍ତୀକଃ ଶକ୍ତିହେତିକଃ ॥
[୧୨।୧୩] ଯାଷ୍ଟୀକ ପାରଶ୍ୱଧିକୌ ଯଷ୍ଟିପରଶ୍ୱଧହେତିକୌ ।

---

୧ । ଆମୁକ୍ତ । ପ୍ରତିମୁକ୍ତ । ପିନଦ୍ଧ । ଅପିନଦ୍ଧ ଏ ଚାରିନାମ ବର୍ମାବୃତ ଯୋଦ୍ଧାର ।
୨ । ସନ୍ନଦ୍ଧ । ବର୍ମିତ । ସଜ୍ଜ । ଦଂଶିତ । ବ୍ୟୂଢ଼କଙ୍କଟ ଏ ପାଞ୍ଚନାମ କବଚଯୁକ୍ତ ଯୋଦ୍ଧାର ।
୩ । କବଚଯୁକ୍ତପୁରୁଷ ସମୂହର ନାମକୁ କାବଚିକ କହି । ( ଯୋଦ୍ଧାଙ୍କ ଦଳର
୪ । ପଦାତି । ପତ୍ତି । ପଦଗ । ପଦାତିକ । ପଦାଜି । ପଦ୍ଗ । ପଦିକ । ଏ ସାତନାମ
୫ । ପାଦାତ । ପତ୍ତିସଂହତି ଏ ଦୁଇନାମ ପଦାତି-ସମୂହର ।
୬ । ଶସ୍ତ୍ରାଜୀବ । କାଣ୍ଡପୃଷ୍ଠ । ଆୟୁଧୀୟ । ଆୟୁଧିକ ଏ ଚାରିନାମ ଯୁଦ୍ଧଜୀବୀ ବ୍ୟକ୍ତିର ।
୭ । କୃତହସ୍ତ । ସୁପ୍ରୟୋଗ ବିଶିଖ । କୃତପୁଙ୍ଖ ଏ ତିନିନାମ ସୁଶିକ୍ଷିତ ବାଣଚାଳୀ ବ୍ୟକ୍ତିର ।
୮ । ଲକ୍ଷ ଭେଦିବାରେ ଅସମର୍ଥ ବ୍ୟକ୍ତିକି ଅପରାଦ୍ଧପୃଷତ୍କ କହି । [ ର୍ଦ୍ଧାରୀ ବ୍ୟକ୍ତିର ।
୯ । ଧନ୍ୱୀ । ଧନୁଷ୍ମାନ୍ । ଧାନୁଷ୍କ । ନିଷଙ୍ଗୀ । ଅସ୍ତ୍ରୀ । ଧନୁର୍ଦ୍ଧର । ଏ ଛଅନାମ ଧନୁ-
୧୦ । କାଣ୍ଡବାନ୍ । କାଣ୍ଡୀର ଏ ଦୁଇନାମ ବାଣଯୁକ୍ତ ଯୁଦ୍ଧକାରୀର ।
୧୧ । ଶାକ୍ତୀକ । ଶକ୍ତିହେତିକ ଏ ଦୁଇନାମ ଶକ୍ତିଅସ୍ତ୍ରରେ ଯୁଦ୍ଧ କରିବା ବ୍ୟକ୍ତିର ।
୧୨ । ଯଷ୍ଟିଦ୍ୱାରା ଯୁଦ୍ଧକରୁଥିବା ବ୍ୟକ୍ତିକି ଯାଷ୍ଟୀକ କହି ।
୧୩ । ପରଶୁଦ୍ୱାରା ଯୁଦ୍ଧକରୁଥିବା ବ୍ୟକ୍ତିକି ପାରଶ୍ୱଧିକ କହି ।

[୧] ନୈସ୍ତ୍ରିଂଶିକୋଽସିହେତିଃ ସ୍ୟାତ୍ [୨] ସମୌ ପ୍ରାସିକ କୌନ୍ତିକୌ
[୩] ଚର୍ମୀ ଫଳକପାଣିଃ ସ୍ୟାତ୍ [୪] ପତାକୀ ବୈଜୟନ୍ତିକଃ ।
[୫] ଅନୁପ୍ଲବଃ ସହାୟଶ୍ଚାନୁଚରୋଽଭିସରଃ ସମାଃ ।
[୬] ପୁରୋଗାଗ୍ରେସରପ୍ରଷ୍ଠାଗ୍ରତଃ ସର ପୁରଃସରାଃ ।
ପୁରୋଗମଃ ପୁରୋଗାମୀ [୭] ମନ୍ଦଗାମୀ ତୁ ମନ୍ଥରଃ ॥
[୮] ଜଂଘାଲୋଽତିଜବ [୯] ସ୍ତୁଲ୍ୟୌ ଜଂଘାକରିକ ଜାଂଘିକୌ ।
ତରସ୍ୱୀ ତ୍ୱରିତୋ ବେଗୀ ପ୍ରଜବୀ ଜବନୋ ଜବଃ ॥
[୧୦] ଜୟ୍ୟୋ ଯଃ ଶକ୍ୟତେ ଜେତୁଂ [୧୧]ଜେୟୋ ଜେତବ୍ୟମାତ୍ରକେ
[୧୨] ଜୈତ୍ରସ୍ତୁ ଜେତା [୧୩] ଯୋ ଗଚ୍ଛତ୍ୟଲଂ ବିଦ୍ୱିଷତଃ ପ୍ରତି ।
ସୋଽଭ୍ୟମିତ୍ରୋଽଭ୍ୟମିତ୍ରୀୟୋଽପ୍ୟଭ୍ୟମିତ୍ରୀଣ ଇତ୍ୟପି ॥

---

୧ । ନୈସ୍ତ୍ରିଂଶିକ । ଅସିହେତି ଏ ଦୁଇନାମ ଖଡ୍ଗଧାରୀ ଯୋଦ୍ଧା ବ୍ୟକ୍ତିର ।
୨ । ପ୍ରାସିକ । କୌନ୍ତିକ ଏ ଦୁଇନାମ ପ୍ରାସ ଏବଂ କୁନ୍ତ ଅସ୍ତ୍ରଧାରୀ ପୁରୁଷର ।
୩ । ଚର୍ମିନ୍ । ଫଳକପାଣି ଏ ଦୁଇନାମ ଢାଲଧାରୀ ପୁରୁଷର ।
୪ । ପତାକିନ୍ । ବୈଜୟନ୍ତିକ ଏ ଦୁଇନାମ ପତାକାଧାରୀର । ( ସାମାନ୍ୟର ।
୫ । ଅନୁପ୍ଲବ । ସହାୟ । ଅନୁଚର । ଅଭିସର ଏ ଚାରିନାମ ସମଭିବ୍ୟାହାର
୬ । ପୁରୋଗ । ଅଗ୍ରେସର । ପ୍ରଷ୍ଠ । ଅଗ୍ରତଃସର । ପୁରଃସର । ପୁରୋଗମ । ପୁରୋଗାମିନ୍ ଏ ସାତନାମ ଅଗ୍ରଗାମୀ ପୁରୁଷର ।
୭ । ମନ୍ଦଗାମିନ୍ । ମନ୍ଥର ଏ ଦୁଇନାମ ମନ୍ଦଗାମୀ ପୁରୁଷର ।
୮ । ଜଂଘାଳ । ଅତିଜବ ଏ ଦୁଇନାମ ବେଗଗାମୀ ପୁରୁଷର ।
୯ । ଜଂଘାକରିକ । ଜାଂଘିକ । ତରସ୍ୱିନ୍ । ତ୍ୱରିତ । ବେଗିନ୍ । ପ୍ରଜବିନ୍ । ଜବନ । ଜବ ଏ ଆଠନାମ ଧାବକର ।
୧୦ । ଜୟ୍ୟ ଶକ୍ୟ ବ୍ୟକ୍ତିକି ଜୟ୍ୟ କହି ।
୧୧ । ଜେୟ । ଜେତବ୍ୟ ଏ ଦୁଇନାମ ଜୟନୀୟ ବ୍ୟକ୍ତିର ।
୧୨ । ଜୈତ୍ର । ଜେତୃ ଏ ଦୁଇନାମ ଜୟକର୍ତ୍ତାର ।
୧୩ । ଅଭ୍ୟମିତ୍ର । ଅଭ୍ୟମିତ୍ରୀୟ । ଅଭ୍ୟମିତ୍ରୀଣ ଏ ତିନିନାମ ଶତ୍ରୁ ସମ୍ମୁଖରେ ଯିବା ବ୍ୟକ୍ତିର ।

[୧] ଊର୍ଜ୍ଜସ୍ୱଳଃ ସ୍ୟାଦୂର୍ଜ୍ଜସ୍ୱୀ ଯ ଊର୍ଜ୍ଜୋଽତିଶୟାନ୍ୱିତଃ ।
[୨] ସ୍ୟାଦୁରସ୍ୱାନୁରସିଲୋ [୩] ରଥିକୋ ରଥିନୋ ରଥୀ ॥
[୪] କାମଙ୍ଗାମ୍ୟନୁକାମୀନୋ [୫] ଽତ୍ୟନ୍ତୀନସ୍ତଥା ଭୃଶଂ ।
[୬] ଶୂରୋ ବୀରଶ୍ଚ ବିକ୍ରାନ୍ତୋ [୭] ଜେତା ଜିଷ୍ଣୁଶ୍ଚ ଜିତ୍ୱରଃ ॥
[୮] ସାଂଯୁଗୀନୋ ରଣେ ସାଧୁଃ ଶସ୍ତ୍ରାଜୀବାଦୟଃ ସ୍ଫୁଟାଃ ।
[୯] ଧ୍ୱଜିନୀ ବାହିନୀ ସେନା ପୃତନାଽନୀକିନୀ ଚମୂଃ ।
ବରୂଥିନୀ ବଳଂ ସୈନ୍ୟଂ ଚକ୍ରଂ ଚାନୀକମସ୍ତ୍ରିୟାଂ ।
[୧୦] ବ୍ୟୂହସ୍ତୁ ବଳବିନ୍ୟାସୋ [୧୧] ଭେଦା ଦଣ୍ଡାଦୟୋ ଯୁଧି ॥
[୧୨] ପ୍ରତ୍ୟାସାରୋ ବ୍ୟୂହପାର୍ଷ୍ଣିଃ [୧୩] ସୈନ୍ୟପୃଷ୍ଠେ ପ୍ରତିଗ୍ରହଃ ॥

---

୧ । ଊର୍ଜ୍ଜସ୍ୱଳ । ଊର୍ଜ୍ଜସ୍ୱିନ୍ ଏ ଦୁଇନାମ ଅତିଶୟ ବଳବାନ୍ ବ୍ୟକ୍ତିର ।
୨ । ଉରସ୍ୱତ୍ । ଉରସିଲ ଏ ଦୁଇନାମ ପ୍ରଶସ୍ତ ବକ୍ଷସ୍ଥଳ ବିଶିଷ୍ଟ ବ୍ୟକ୍ତିର ।
୩ । ରଥିକ । ରଥିର । ରଥିନ୍ ଏ ତିନିନାମ ରଥସ୍ୱାମୀର ।
୪ । କାମଗାମିନ୍ । ଅନୁକାମୀନ ଏ ଦୁଇନାମ ଇଚ୍ଛାନୁସାରେ ଗମନଶୀଳ ବ୍ୟକ୍ତିର ।
୫ । ଅତିଶୟ ଗମନଶୀଳ ବ୍ୟକ୍ତିକି ଅତ୍ୟନ୍ତୀନ କହି ।
୬ । ଶୂର । ବୀର । ବିକ୍ରାନ୍ତ ଏ ତିନିନାମ ବୀରର ।
୭ । ଜେତୃ । ଜିଷ୍ଣୁ । ଜିତ୍ୱର ଏ ତିନିନାମ ଜୟଶୀଳ ବ୍ୟକ୍ତିର ।
୮ । ଯୁଦ୍ଧକୁଶଳ ବ୍ୟକ୍ତିକି ସାଂଯୁଗୀନ କହି ।
୯ । ଧ୍ୱଜିନୀ । ବାହିନୀ । ସେନା । ପୃତନା । ଅନୀକିନୀ । ଚମୂ । ବରୂଥିନୀ । ବଳ । ସୈନ୍ୟ । ଚକ୍ର । ଅନୀକ ଏ ଏଗାରନାମ ସେନାର ।
୧୦ । ବ୍ୟୂହ ବଳବିନ୍ୟାସ ଏ ଦୁଇନାମ ସୈନ୍ୟରଚନାର ।
୧୧ । ବ୍ୟୂହବିଶେଷରେ ନାମକୁ ଦଣ୍ଡବ୍ୟୂହ ଇତ୍ୟାଦି କହି ।
୧୨ । ପ୍ରତ୍ୟାସାର । ବ୍ୟୂହପାର୍ଷ୍ଣି ଏ ଦୁଇନାମ ବ୍ୟୂହର ପଶ୍ଚାଦ୍‌ଭାଗର ।
୧୩ । ସେନାର ପଶ୍ଚାଦ୍‌ଭାଗକୁ ପ୍ରତିଗ୍ରହ କହି ।

[୧] ଏକେଭୈକରଥାତ୍ର୍ୟଶ୍ୱାପତ୍ତିଃ ପଞ୍ଚପଦାତିକା ।
ପତ୍ତ୍ୟଙ୍ଗୈସ୍ତ୍ରିଗୁଣୈଃ ସର୍ବୈଃ କ୍ରମାଦାଖ୍ୟା ଯଥୋତ୍ତରଂ ॥
[୨] ସେନାମୁଖଂ [୩] ଗୁଲ୍ମ [୪] ଗଣୌ [୫] ବାହିନୀ [୬] ପୃତନା
[୭] ଚମୂଃ ॥
[୮] ଅନୀକିନୀ [୯] ଦଶାନୀକିନ୍ୟକ୍ଷୌହିଣ୍ୟ [୧୦] ଽଥ ସମ୍ପଦି ।
ସମ୍ପତ୍ତିଃ ଶ୍ରୀଶ୍ଚ ଲକ୍ଷ୍ମୀଶ୍ଚ [୧୧] ବିପତ୍ତ୍ୟାଂ ବିପଦାପଦୌ ॥
[୧୨] ଆୟୁଧଂ ତୁ ପ୍ରହରଣଂ ଶସ୍ତ୍ରମସ୍ତ୍ର [୧୩] ମଥାସ୍ତ୍ରିୟୌ ।
ଧନୁଶ୍ଚାପୌ ଧନ୍ୱ ଶରାସନ କୋଦଣ୍ଡ କାର୍ମ୍ମୁକଂ ॥
ଇଷ୍ୱାସୋଽପ୍ୟ [୧୪] ଽଥ କର୍ଣ୍ଣସ୍ୟ କାଳପୃଷ୍ଠଂ ଶରାସନଂ ।
[୧୫] କପିଧ୍ୱଜସ୍ୟ ଗାଣ୍ଡୀବ ଗାଣ୍ଡିବୌ ପୁଂନପୁଂସକୌ ॥

---

୧ । ଏକ ହସ୍ତୀ, ଏକ ରଥ, ତିନି ଅଶ୍ୱ, ପଞ୍ଚପଦାତି ଏହି ସେନାର ଥାନକୁ ପତ୍ତି କହି ।
୨ । ତିନି ପତ୍ତିକୁ ସେନାମୁଖ କହି ।
୩ । ତିନି ସେନାମୁଖକୁ ଗୁଲ୍ମ କହି ।
୪ । ତିନି ଗୁଲ୍ମକୁ ଗଣ କହି ।
୫ । ତିନି ଗଣକୁ ବାହିନୀ କହି ।
୬ । ତିନି ବାହିନୀକୁ ପୃତନା କହି ।
୭ । ତିନି ପୃତନାକୁ ଚମୂ କହି ।
୮ । ତିନି ଚମୂକୁ ଅନୀକିନୀ କହି ।
୯ । ଦଶ ଅନୀକିନୀକୁ ଅକ୍ଷୌହିଣୀ କହି ।
୧୦ । ସମ୍ପଦ୍ । ସମ୍ପତ୍ତି । ଶ୍ରୀ । ଲକ୍ଷ୍ମୀ ଏ ଚାରିନାମ ସମ୍ପଦର ।
୧୧ । ବିପତ୍ତି । ବିପଦ୍ । ଆପଦ୍ ଏ ତିନିନାମ ଆପଦର ।
୧୨ । ଆୟୁଧ । ପ୍ରହରଣ । ଶସ୍ତ୍ର । ଅସ୍ତ୍ର ଏ ଚାରିନାମ ଅସ୍ତ୍ରର ।
୧୩ । ଧନୁସ୍ । ଚାପ । ଧନ୍ୱନ୍ । ଶରାସନ । କୋଦଣ୍ଡ । କାର୍ମ୍ମୁକ । ଇଷ୍ୱାସ ଏ ସାତନାମ ଧନୁର ।
୧୪ । କର୍ଣ୍ଣଙ୍କ ଧନୁକୁ କାଳପୃଷ୍ଠ କହି ।
୧୫ । ଅର୍ଜ୍ଜୁନର ଧନୁକୁ ଗାଣ୍ଡୀବ ଅବା ଗାଣ୍ଡିବ କହି ।

[୧] କୋଟିରସ୍ୟାଟନୀ [୨] ଗୋଧା ତଲେ ଜ୍ୟାଘାତବାରଣେ ।
[୩] ଲସ୍ତକସ୍ତୁ ଧନୁର୍ମଧ୍ୟଂ [୪] ମୌର୍ବୀ ଜ୍ୟା ଶିଞ୍ଜିନୀ ଗୁଣଃ ॥
[୫] ସ୍ୟାତ୍ ପ୍ରତ୍ୟାଲୀଢ଼ମାଲୀଢ଼ମିତ୍ୟାଦସ୍ଥାନପଞ୍ଚକଂ ।
[୬] ଲକ୍ଷ୍ୟଂ ଲକ୍ଷଂ ଶରବ୍ୟଂ ଚ [୭] ଶରାଭ୍ୟାସ ଉପାସନଂ ।
(୮) ପୃଷତ୍କ ବାଣ ବିଶିଖା ଅଜିହ୍ମଗ ଖଗାଶୁଗା ।
କଲମ୍ବ ମାର୍ଗଣ ଶରାଃ ପତ୍ରୀ ରୋପ ଇଷୁର୍ଦ୍ୱୟୋଃ ।
[୯] ପ୍ରକ୍ଷ୍ୱେଡନାସ୍ତୁ ନାରାଚାଃ [୧୦] ପକ୍ଷୋ ବାଜ ସ୍ତ୍ରିଷୂତ୍ତରେ ।
[୧୧] ନିରସ୍ତଃ ପ୍ରହିତେ ବାଣେ [୧୨] ବିଷାକ୍ତେ ଦିଗ୍ଧ ଲିପ୍ତକୌ ।
[୧୩] ତୂଣୋପାସଙ୍ଗ ତୂଣୀର ନିଷଙ୍ଗା ଇଷୁଧିର୍ଦ୍ୱୟୋଃ ।
ତୂଣ୍ୟାଂ [୧୪] ଖଡ୍ଗେ ତୁ ନିସ୍ତ୍ରିଂଶ ଚନ୍ଦ୍ରହାସାସିରିଷ୍ଟୟଃ ।
କୌକ୍ଷେୟକୋ ମଣ୍ଡଳାଗ୍ରଃ କରବାଳଃ କୃପାଣବତ୍ ।

---

୧ । ଧନୁ ଦୁଇକୁ ଅଟନୀ କହି ।
୨ । ଗୋଧା । ତଳ ଏ ଦୁଇନାମ ଧନୁର ଜ୍ୟାଘାତ ବାରଣାର୍ଥ ବାହୁପଟ୍ଟିକାର ।
୩ । ଲସ୍ତକ । ଧନୁର୍ମଧ୍ୟ ଏ ଦୁଇନାମ ଧନୁମଧ୍ୟସ୍ଥଳର ।
୪ । ମୌର୍ବୀ । ଜ୍ୟା । ଶିଞ୍ଜିନୀ । ଗୁଣ ଏ ଚାରିନାମ ଧନୁ ଗୁଣର ।
୫ । ପ୍ରତ୍ୟାଲୀଢ଼ । ଆଲୀଢ଼ ଇତ୍ୟାଦି ଧନୁର୍ଦ୍ଧର ବ୍ୟକ୍ତିର ସ୍ଥାନର ନାମ ।
୬ । ଲକ୍ଷ୍ୟ । ଲକ୍ଷ । ଶରବ୍ୟ ଏ ତିନିନାମ ଲକ୍ଷର ।
୭ । ଶରାଭ୍ୟାସ । ଉପାସନ ଏ ଦୁଇନାମ ବାଣ ଅଭ୍ୟାସର ।
୮ । ପୃଷତ୍କ । ବାଣ । ବିଶିଖ । ଅଜିହ୍ମଗ । ଖଗ । ଆଶୁଗ । କଲମ୍ବ । ମାର୍ଗଣ । ଶର । ପତ୍ରିନ୍ । ରୋପ । ଇଷୁ ଏ ବାରନାମ ବାଣର ।
୯ । ପ୍ରକ୍ଷ୍ୱେଡ଼ନ । ନାରାଚ ଏ ଦୁଇନାମ ଲୌହମୟ ଧନୁର ।
୧୦ । ପକ୍ଷ । ବାଜ ଏ ଦୁଇନାମ ଶରରେ ଲାଗିଥିବା ପରର ।
୧୧ । କ୍ଷିପ୍ତ ବାଣକୁ ନିରସ୍ତ କହି । ୧୨ । ଦିଗ୍ଧ । ଲିପ୍ତକ ଏ ଦୁଇନାମ ବିଷାକ୍ତ ବାଣର ।
୧୩ । ତୂଣ । ଉପାସଙ୍ଗ । ତୂଣୀର । ନିଷଙ୍ଗ । ଇଷୁଧି । ତୂଣୀ ଏ ଛନାମ ତୂଣର ।
୧୪ । ଖଡ୍ଗ । ନିସ୍ତ୍ରିଂଶ । ଚନ୍ଦ୍ରହାସ । ଅସି । ରିଷ୍ଟି । କୌକ୍ଷେୟକ । ମଣ୍ଡଳାଗ୍ର । କରବାଳ ଏ ଆଠନାମ ଖଡ୍ଗର ।

[୧] ତ୍ସରୁଃ ଖଡ୍ଗାଦିମୁଷ୍ଟୌ ସ୍ୟା [୨] ନ୍ମେଖଲା ତନ୍ନିବନ୍ଧନଂ ।
[୩] ଫଲକୋ ଽସ୍ତ୍ରୀ ଫଲଂ ଚର୍ମ୍ମ [୪] ସଂଗ୍ରାହୋ ମୁଷ୍ଟିରସ୍ୟ ଯଃ
[୫] ଦ୍ରୁଘଣେ ମୁଦ୍ଗରଘନୌ [୬] ସ୍ୟାଦୀଲୀ କରପାଲିକା ।
[୭] ଭିନ୍ଦିପାଲଃ ସୃଗସ୍ତୁଲ୍ୟୌ [୮] ପରିଘଃ ପରିଘାତିନଃ ॥
[୯] ଦ୍ୱୟୋଃ କୁଠାରୁଃ ସ୍ୱଧିତିଃ ପରଶୁଶ୍ଚ ପରଶ୍ୱଧଃ ।
[୧୦] ସ୍ୟାଚ୍ଛସ୍ତ୍ରୀ ଚାସିପୁତ୍ରୀ ଚ ଛୁରିକା ଚାସିଧେନୁକା ॥
[୧୧] ବା ପୁଂସି ଶଲ୍ୟଂ ଶଙ୍କୁର୍ନା [୧୨] ସର୍ବଲା ତୋମରୋଽସ୍ତ୍ରିୟାଂ ।
[୧୩] ପ୍ରାସସ୍ତୁ କୁନ୍ତଃ [୧୪] କୋଣସ୍ତୁ ସ୍ତ୍ରିୟଃ ପାଲ୍ୟଶ୍ରିକୋଟୟଃ ॥
[୧୫] ସର୍ବାଭିସାରଃ ସର୍ବୌଘଃ ସର୍ବସନ୍ନହନାର୍ଥକଃ ।
[୧୬] ଲୋହାଭିସାରୋଽସ୍ତ୍ରଭୃତାଂ ରାଜ୍ଞାଂ ନୀରାଜନାବିଧିଃ ॥

---

୧ । ଖଡ୍ଗାଦିର ମୁଷ୍ଟିକି ତ୍ସରୁ କହି ।
୨ । ଖଡ୍ଗାଦିର ମୁଷ୍ଟିବନ୍ଧକୁ ମେଖଳା କହି ।
୩ । ଫଳକ । ଫଳ । ଚର୍ମ୍ମନ୍ ଏ ତିନିନାମ ଚର୍ମ୍ମାଚ୍ଛାଦିତ ଢାଲର ।
୪ । ଢାଲର ମୁଷ୍ଟିକି ସଂଗ୍ରାହ କହି ।
୫ । ଦ୍ରୁଘଣ । ମୁଦ୍ଗର । ଘନ ଏ ତିନିନାମ ମୁଦ୍ଗରର ।
୬ । ଈଲୀ । କରପାଲିକା ଏ ଦୁଇନାମ ଏକଧାର ଛୁରିର ।
୭ । ଭିନ୍ଦିପାଳ । ସୃଗ ଏ ଦୁଇନାମ ନଳୀପତ୍ରର ।
୮ । ପରିଘ । ପରିଘାତିନ୍ ଏ ଦୁଇନାମ ପରିଘଅସ୍ତ୍ରର ।
୯ । କୁଠାର । ସ୍ୱଧିତି । ପରଶୁ । ପରଶ୍ୱଧ ଏ ଚାରିନାମ କୁଠାରର ।
୧୦ । ଶସ୍ତ୍ରୀ । ଅସିପୁତ୍ରୀ । ଛୁରିକା ଅସିଧେନୁକା ଏ ଚାରିନାମ ଛୁରିର ।
୧୧ । ଶଲ୍ୟ । ଶଙ୍କୁ ଏ ଦୁଇନାମ ଶେଲଅସ୍ତ୍ରର ।
୧୨ । ସର୍ବଲା । ତୋମର ଏ ଦୁଇନାମ ସାବଳଅସ୍ତ୍ରର ।
୧୩ । ପ୍ରାସ । କୁନ୍ତ । ଏ ଦୁଇନାମ କୁନ୍ତଅସ୍ତ୍ରର ।
୧୪ । କୋଣ । ପାଳି । ଅଶ୍ରି । କୋଟି ଏ ଚାରିନାମ ଅସ୍ତ୍ର ଅଗ୍ରଭାଗର ।
୧୫ । ସର୍ବାଭିସାର । ସର୍ବୌଘ । ସର୍ବସନ୍ନହନ ଏ ତିନିନାମ ଚତୁରଙ୍ଗସେନା ସଜ୍ଜୀକରଣର ।
୧୬ । ରାଜାମାନଙ୍କର ଅସ୍ତ୍ରଧାରଣ ଶିକ୍ଷା ସମୟରେ ଅରତିର ନାମକୁ ଲୋହାଭିହାର କହି ।

[୧] ଯତ୍ସେନୟାଭିଗମନମରୌ ତଦଭିଷେଣନଂ ।
[୨] ଯାତ୍ରା ବ୍ରଜ୍ୟାଭିନିର୍ଯ୍ୟାଣଂ ପ୍ରସ୍ଥାନଂ ଗମନଂ ଗମଃ ॥
[୩] ସ୍ୟାଦାସାରଃ ପ୍ରସରଣଂ [୪] ପ୍ରଚକ୍ରଂ ଚଳିତାର୍ଥକଂ ।
[୫] ଅହିତାନ୍ ପ୍ରତ୍ୟଭୀତସ୍ୟ ରଣେ ଯାନମଭିକ୍ରମଃ ॥
[୬] ବୈତାଳିକା ବୋଧକରା [୭] ଚାକ୍ରିକା ଘାଣ୍ଟିକାର୍ଥକାଃ ।
[୮] ସ୍ୟୁର୍ମାଗଧାସ୍ତୁ ମଗଧା [୯] ବନ୍ଦିନଃ ସ୍ତୁତିପାଠକାଃ ॥
[୧୦] ସଂଶପ୍ତକାସ୍ତୁ ସମୟାତ୍ସଂଗ୍ରାମାଦନିବର୍ତ୍ତିନଃ ।
[୧୧] ରେଣୁର୍ଦ୍ଵୟୋଃ ସ୍ତ୍ରିୟାଂ ଧୂଳିଃ ପାଂଶୁର୍ନା ନ ଦ୍ଵୟୋ ରଜଃ ॥
[୧୨] ଚୂର୍ଣ୍ଣେ କ୍ଷୋଦଃ [୧୩] ସମୁତ୍ପିଞ୍ଜ ପିଞ୍ଜଳୌ ଭୃଶମାକୁଳେ ।
[୧୪] ପତାକା ବୈଜୟନ୍ତୀ ସ୍ୟାତ୍ତୁ କେତନଂ ଧ୍ୱଜମସ୍ତ୍ରିୟାଂ ॥

---

୧ । ଅଭି । ଷେଣନ ଏ ଦୁଇନାମ ସେନାମାନଙ୍କ ସହିତ ଶତ୍ରୁ ଅଭିମୁଖକୁ ଗମନର ।
୨ । ଯାତ୍ରା । ବ୍ରଜ୍ୟା । ଅଭିନିର୍ଯ୍ୟାଣ । ପ୍ରସ୍ଥାନ । ଗମନ । ଗମ ଏ ଛଅନାମ ସାମାନ୍ୟ ଜୟାର୍ଥଗମନର ।
୩ । ଆସାର । ପ୍ରସରଣ ଏ ଦୁଇନାମ ଚତୁର୍ଦ୍ଦିଗବ୍ୟାପ୍ତ ସୈନ୍ୟସମୂହର ।
୪ । ପ୍ରଚକ୍ର । ଚଳିତ ଏ ଦୁଇନାମ ପ୍ରକୃଷ୍ଟରୂପ ସୈନ୍ୟଚଳନର ।
୫ । ଶତ୍ରୁପ୍ରତି ଭୟଶୂନ୍ୟଲୋକର ଗମନ କରିବା ନାମକୁ ଅଭିକ୍ରମ କହି ।
୬ । ବୈତାଳିକ । ବୋଧକର ଏ ଦୁଇନାମ ସ୍ତୁତିଦ୍ୱାରା ନିଦ୍ରାଭଙ୍ଗକାରୀର ।
୭ । ଚାକ୍ରିକ । ଘାଣ୍ଟିକ ଏ ଦୁଇନାମ ଘଣ୍ଟାଦ୍ୱାରା ପ୍ରଭାତରେ ସ୍ତୁତିପାଠକର ।
୮ । ମାଗଧ । ମଗଧ ଏ ଦୁଇନାମ ବଂଶର ସ୍ତୁତିପାଠକ ଅର୍ଥାତ୍ ଭାଟର ।
୯ । ବନ୍ଦୀ । ସ୍ତୁତିପାଠକ ଏ ଦୁଇନାମ ସାମାନ୍ୟ ସ୍ତୁତିପାଠକର ।
୧୦ । ଯୁଦ୍ଧରେ ଅପଳାଇବାର ନାମକୁ ସଂଶପ୍ତକ କହି ।
୧୧ । ରେଣୁ । ଧୂଳି । ପାଂଶୁ । ରଜସ୍ ଏ ଚାରିନାମ ଧୂଳିର ।
୧୨ । ଚୂର୍ଣ୍ଣ । କ୍ଷୋଦ ଏ ଦୁଇନାମ ପେଷଣଜାତ ଧୂଳିର ।
୧୩ । ସମୁତ୍ପିଞ୍ଜ । ପିଞ୍ଜଳ ଏ ଦୁଇନାମ ଅତିଶୟ ବ୍ୟାକୁଳ ସୈନ୍ୟାଦିର ।
୧୪ । ପତାକା । ବୈଜୟନ୍ତୀ । କେତନ । ଧ୍ୱଜ ଏ ଚାରିନାମ ପତାକାର ।

[୧] ସା ବୀରାଶଂସନଂ ଯୁଦ୍ଧଭୂମିର୍ଯାତିଭୟପ୍ରଦା ।
[୨] ଅହଂପୂର୍ବମହଂପୂର୍ବମିତ୍ୟହଂପୂର୍ବିକା ସ୍ତ୍ରିୟାଂ ॥
[୩] ଆହୋପୁରୁଷିକା ଦର୍ପାଦ୍ୟା ସ୍ୟାତ୍ ସମ୍ଭାବନାତ୍ମନି ।
[୪] ଅହମହମିକା ତୁ ସା ସ୍ୟାତ୍ ପରସ୍ପରଂ ଯୋଽହମହଙ୍କାରଃ ।
[୫] ଦ୍ରବିଣଂ ତରଃ ସହୋବଲଶୌର୍ଯ୍ୟାଣି ସ୍ଥାମଶୁଷ୍ମଂ ଚ ।
ଶକ୍ତିଃ ପରାକ୍ରମ ପ୍ରାଣୌ [୬] ବିକ୍ରମସ୍ତ୍ୱତିଶକ୍ତିତା ॥
[୭] ବୀରପାନଂ ତୁ ଯତ୍ ପାନଂ ବୃତ୍ତେ ଭାବିନି ବା ରଣେ ।
[୮] ଯୁଦ୍ଧମାୟୋଧନଂ ଜନ୍ୟଂ ପ୍ରଧନଂ ପ୍ରବିଦାରଣଂ ॥
ମୃଧମାସ୍କନ୍ଦନଂ ସଂଖ୍ୟଂ ସମୀକଂ ସାମ୍ପରାୟିକଂ ।
ଅସ୍ତ୍ରିୟାଂ ସମରାନୀକ ରଣାଃ କଳହବିଗ୍ରହୌ ॥
ସମ୍ପ୍ରହାରାଭିସମ୍ପାତ କଳି ସଂସ୍ଫୋଟ ସଂଯୁଗାଃ ।
ଅଭ୍ୟାମର୍ଦ୍ଦ ସମାଘାତ ସଙ୍ଗ୍ରାମାଭ୍ୟାଗମାହବାଃ ॥
ସମୁଦାୟଃ ସ୍ତ୍ରିୟଃ ସଂଯତ୍ ସମିତ୍ୟାଜି ସମିଦ୍ୟୁଧଃ ।

---

୧ । ଅତିଭୟପ୍ରଦା ଯୁଦ୍ଧଭୂମିର ନାମକୁ ବୀରାଶଂସନ କହି ।
୨ । ଅଗ୍ରେ ମୁଁ ଏହିରୂପ ପରସ୍ପର ଅଗ୍ରଗମନକୁ ଅହଂପୂର୍ବି କହି ।
୩ । ଅହଙ୍କାରହେତୁ ଆପଣାର ଅଧିକ ଶକ୍ତି ପ୍ରକାଶକରଣର ନାମ ଅହୋପୁରୁଷିକା ।
୪ । ଅନ୍ୟାନ୍ୟ ଅପେକ୍ଷା କେବଳ ଆମ୍ଭେ ଉତ୍ତମ ଏହିରୂପ ଅହଂକାରକୁ ଅହମହମିକା କହି ।
୫ । ଦ୍ରବିଣ । ତରସ୍ । ସହସ୍ । ବଳ । ଶୌର୍ଯ୍ୟ । ସ୍ଥାମନ୍ । ଶୁଷ୍ମନ୍ । ଶକ୍ତି । ପରାକ୍ରମ । ପ୍ରାଣ ଏ ଦଶନାମ ପରାକ୍ରମର ।
୬ । ବିକ୍ରମ । ଅତିଶକ୍ତିତା ଏ ଦୁଇନାମ ଅତିଶୟ ଶକ୍ତିର ।
୭ । ଯୁଦ୍ଧରେ ବୀରମାନଙ୍କର ମଦ୍ୟପାନର ନାମକୁ ବୀରପାନ କହି ।
୮ । ଯୁଦ୍ଧ । ଆୟୋଧନ । ଜନ୍ୟ । ପ୍ରଧନ । ପ୍ରବିଦାରଣ । ମୃଧ । ଆସ୍କନ୍ଦନ । ସଂଖ୍ୟ । ସମୀକ । ସାମ୍ପରାୟିକ । ସମର । ଅନୀକ । ରଣ । କଳହ । ବିଗ୍ରହ । ସମ୍ପ୍ରହାର । ଅଭିସମ୍ପାତ । କଳି । ସଂସ୍ଫୋଟ । ସଂଯୁଗ । ଅଭ୍ୟାମର୍ଦ୍ଦ । ସମାଘାତ । ସଙ୍ଗ୍ରାମ । ଅଭ୍ୟାଗମ । ଆହବ । ସମୁଦାୟ । ସଂଯତ୍ । ସମିତ୍ । ଆଜି । ସମିଦ୍ ଯୁଧ୍ ଏ ଏକତ୍ରିଂଶନାମ ଯୁଦ୍ଧର ।

[୧] ନିଯୁଦ୍ଧଂ ବାହୁଯୁଦ୍ଧେ [୨] ଽଥ ତୁମୁଳଂ ରଣସଙ୍କୁଳେ ।
[୩] କ୍ଷ୍ୱେଡ଼ା ତୁ ସିଂହନାଦଃ ସ୍ୟାତ୍ [୪] କରିଣାଂ ଘଟନା ଘଟା ।
[୫] କ୍ରନ୍ଦନଂ ଯୋଧସଂରାବୋ [୬] ବୃଂହିତଂ କରିଗର୍ଜ୍ଜିତଂ ।
[୭] ବିସ୍ଫାରୋ ଧନୁଷଃ ସ୍ୱାନଃ [୮] ପଟହାଡମ୍ବରୌ ସମୌ ।
[୯] ପ୍ରସଭଂ ତୁ ବଳାତ୍କାରୋ ହଠୋ [୧୦] ଽଥ ସ୍ଖଳିତଂ ଛଳଂ ॥
[୧୧] ଅଜନ୍ୟଂ କ୍ଳୀବମୁତ୍ପାତଉପସର୍ଗଃ ସମଂ ତ୍ରୟଂ ।
[୧୨] ମୂର୍ଚ୍ଛା ତୁ କଶ୍ମଳଂ ମୋହୋ ଽପ୍ୟ [୧୩] ଽବମର୍ଦ୍ଦସ୍ତୁ ପୀଡ଼ନଂ ॥
[୧୪] ଅଭ୍ୟବସ୍କନ୍ଦନଂ ତ୍ୱଭ୍ୟାସାଦନଂ [୧୫] ବିଜୟୋ ଜୟଃ ।
[୧୬] ବୈରଶୁଦ୍ଧିଃ ପ୍ରତୀକାରୋ ବୈରନିର୍ଯ୍ୟାତନଂ ଚ ସା ॥

---

୧ । ନିଯୁଦ୍ଧ । ବାହୁଯୁଦ୍ଧ ଏ ଦୁଇନାମ ବାହୁଯୁଦ୍ଧର ।
୨ । ତୁମୁଳ । ରଣସଙ୍କୁଳ ଏ ଦୁଇନାମ ଏକଠାମଧ୍ୟରେ ବହୁ ଯୋଦ୍ଧାଯୁଦ୍ଧର ।
୩ । କ୍ଷ୍ୱେଡ଼ା । ସିଂହନାଦ ଏ ଦୁଇନାମ ଯୁଦ୍ଧର ଉତ୍ସାହ ନିମିତ୍ତ ଶବ୍ଦର ।
୪ । ଘଟନା । ଘଟା ଏ ଦୁଇନାମ ଯୁଦ୍ଧର ଏକପଙ୍କ୍ତିର ହସ୍ତିସମୂହର ।
୫ । କ୍ରନ୍ଦନ । ଯୋଧସଂରାବ ଏ ଦୁଇନାମ ଯୁଦ୍ଧରେ ଯୋଦ୍ଧାମାନଙ୍କର ପରସ୍ପର ଆହ୍ୱାନର
୬ । ବୃଂହିତ । କରିଗର୍ଜିତ ଏ ଦୁଇନାମ ହସ୍ତୀ ଗର୍ଜନର ।
୭ । ଟଙ୍କାର ଶବ୍ଦକୁ ବିସ୍ଫାର କହି ।
୮ । ପଟହ । ଆଡମ୍ବର ଏ ଦୁଇନାମ ଯୁଦ୍ଧସମୟ ବାଦ୍ୟର ।
୯ । ପ୍ରସଭ । ବଳାତ୍କାର । ହଠ ଏ ତିନିନାମ ବଳାତ୍କାରର ।
୧୦ । ସ୍ଖଳିତ । ଛଳ ଏ ଦୁଇନାମ କପଟଯୁଦ୍ଧର ।
୧୧ । ଅଜନ୍ୟ । ଉତ୍ପାତ । ଉପସର୍ଗ ଏ ତିନିନାମ ସାମାନ୍ୟ ଉପସର୍ଗର ।
୧୨ । ମୂର୍ଚ୍ଛା । କଶ୍ମଳ । ମୋହ ଏ ତିନିନାମ ମୋହର ।
୧୩ । ଅବମର୍ଦ୍ଦ । ପୀଡ଼ନ ଏ ଦୁଇନାମ ଯୁଦ୍ଧପୀଡ଼ନର ।
୧୪ । ଅଭ୍ୟବସ୍କନ୍ଦନ । ଅଭ୍ୟାସାଦନ ଏ ଦୁଇନାମ ପର ସୈନ୍ୟପ୍ରତି ଆକ୍ରମଣର ।
୧୫ । ବିଜୟ । ଜୟ ଏ ଦୁଇନାମ ସାମାନ୍ୟ ଜୟର ।
୧୬ । ବୈରଶୁଦ୍ଧି । ପ୍ରତୀକାର । ବୈରନିର୍ଯ୍ୟାତନ ଏ ତିନିନାମ ପ୍ରତିହିଂସାର ।

[୧] ପ୍ରଦ୍ରାବୋଦ୍ରାବସନ୍ଦ୍ରାବ ସନ୍ଦାବା ବିଦ୍ରବୋଦ୍ରବଃ ।
ଅପକ୍ରମୋଽପଯାନଂ ଚ [୨] ରଣେ ଭଙ୍ଗଃ ପରାଜୟଃ ॥
[୩] ପରାଜିତ ପରାଭୂତୌ ତ୍ରିଷୁ [୪] ନଷ୍ଟ ତିରୋହିତୌ ।
[୫] ପ୍ରମାପଣଂ ନିବର୍ହଣଂ ନିକାରଣଂ ବିଶାରଣଂ ।
ପ୍ରବାସନଂ ପରାସନଂ ନିଷୂଦନଂ ନିହିଂସନଂ ।
ନିର୍ବାସନଂ ସଂଜ୍ଞପନଂ ନିର୍ଗ୍ରନ୍ଥନମପାସନଂ ॥
ନିସ୍ତର୍ହଣଂ ନିହନନଂ କ୍ଷଣନଂ ପରିବର୍ଜ୍ଜନଂ ।
ନିର୍ବାପଣଂ ବିଶସନଂ ମାରଣଂ ପ୍ରତିଘାତନଂ ॥
ଉଦ୍ବାସନ ପ୍ରମଥନ କ୍ରଥନୋଜ୍ଜାସନାନି ଚ ।
ଆଲମ୍ଭ ପିଞ୍ଜ ବିଶର ଘାତୋନ୍ମାଥ ବଧା ଅପି ॥
[୬] ସ୍ୟାତ୍ ପଞ୍ଚତା କାଲଧର୍ମ୍ମୋ ଦିଷ୍ଟାନ୍ତଃ ପ୍ରଲୟୋଽତ୍ୟୟଃ ।
ଅନ୍ତୋ ନାଶୋ ଦ୍ୱୟୋର୍ମୃତ୍ୟୁର୍ମରଣଂ ନିଧନୋଽସ୍ତ୍ରିୟାଂ ॥

---

୧ । ପ୍ରଦ୍ରବ । ଉଦ୍ରାବ । ସନ୍ଦ୍ରାବ । ସନ୍ଦାବ । ବିଦ୍ରବ । ଦ୍ରବ । ଅପକ୍ରମ । ଅପଯାନ ଏ ଆଠନାମ ପଳାଇବାର ।

୨ । ଯୁଦ୍ଧରେ ଭଙ୍ଗଦେବାର ନାମକୁ ପରାଜୟ କହି ।

୩ । ପରାଜିତ । ପରାଭୂତ ଏ ଦୁଇନାମ ପରାଜିତର ।

୪ । ନଷ୍ଟ । ତିରୋହିତ ଏ ଦୁଇନାମ ଲୁକ୍କାୟିତର ।

୫ । ପ୍ରମାପଣ । ନିବର୍ହଣ । ନିକାରଣ । ବିଶାରଣ । ପ୍ରବାସନ । ପରାସନ । ନିଷୂଦନ । ନିହିଂସନ । ନିର୍ବାସନ । ସଂଜ୍ଞପନ । ନିର୍ଗ୍ରନ୍ଥନ । ଅପାସନ । ନିସ୍ତର୍ହଣ । ନିହନନ । କ୍ଷଣନ । ପରିବର୍ଜ୍ଜନ । ନିର୍ବାପଣ । ବିଶସନ । ମାରଣ । ପ୍ରତିଘାତନ । ଉଦ୍ବାସନ । ପ୍ରମଥନ । କ୍ରଥନ । ଉଜ୍ଜାସନ । ଆଲମ୍ଭ । ପିଞ୍ଜ । ବିଶର । ଘାତ । ଉନ୍ମାଥ । ବଧ ଏ ତିରିଶନାମ ସାମାନ୍ୟ ବଧର ।

୬ । ପଞ୍ଚତା । କାଳଧର୍ମ । ଦିଷ୍ଟାନ୍ତ । ପ୍ରଳୟ । ଅତ୍ୟୟ । ଅନ୍ତ । ନାଶ । ମୃତ୍ୟୁ । ମୃତି । ମରଣ । ନିଧନ ଏ ଏଗାର ନାମ ମୃତ୍ୟୁର ।

[୧] ପରାସୁ ପ୍ରାପ୍ତପଞ୍ଚତ୍ୱ ପରେତ ପ୍ରେତ ସଂସ୍ଥିତାଃ ।
ମୃତ ପ୍ରମୀତୌ ତ୍ରିଷ୍ୱେତେ [୨] ଚିତା ଚିତ୍ୟା ଚିତିଃ ସ୍ତ୍ରିୟାଂ ॥
[୩] କବନ୍ଧୋଽସ୍ତ୍ରୀ କ୍ରିୟାଯୁକ୍ତମପମୂର୍ଦ୍ଧ କଳେବରଂ ।
[୪] ଶ୍ମଶାନଂ ସ୍ୟାତ୍ ପିତୃବନଂ [୫] କୁଣପ ଶବମସ୍ତ୍ରିୟାଂ ॥
[୬] ପ୍ରଗ୍ରହୋପଗ୍ରହୌ ବନ୍ଦ୍ୟାଂ [୭] କାରା ସ୍ୟାଦ୍ ବନ୍ଧନାଳୟେ ।
[୮] ପୁଂସି ଭୂମ୍ନ୍ୟସବଃ ପ୍ରାଣାଶ୍ଚୈବଂ [୯] ଜୀବୋଽସୁଧାରଣଂ ॥
[୧୦] ଆୟୁର୍ଜୀବିତକାଳୋ ନା [୧୧] ଜୀବାତୁ ର୍ଜୀବନୌଷଧଂ ।

———:O:———

---

୧ । ପରାସୁ । ପ୍ରାପ୍ତପଞ୍ଚତ୍ୱ । ପରେତ । ପ୍ରେତ । ସଂସ୍ଥିତ । ମୃତ । ପ୍ରମୀତ ଏ ସାତନାମ ମୃତ ବ୍ୟକ୍ତିର ।

୨ । ଚିତା । ଚିତ୍ୟା । ଚିତି ଏ ତିନିନାମ ଶ୍ମଶାନ ଚିତାର ।

୩ । କ୍ରିୟାଯୁକ୍ତ ମସ୍ତକବିହୀନ କଳେବରର ନାମକୁ କବନ୍ଧ କହି ।

୪ । ଶ୍ମଶାନ । ପିତୃବନ ଏ ଦୁଇନାମ ଶ୍ମଶାନର ।

୫ । କୁଣପ । ଶବ ଏ ଦୁଇନାମ ମଡାର ।

୬ । ପ୍ରଗ୍ରହ । ଉପଗ୍ରହ । ବନ୍ଦ ଏ ତିନିନାମ ମୁଦପାଠକର ।

୭ । କାରା । ବନ୍ଧନାଳୟ ଏ ଦୁଇନାମ କାରାଗାରର ।

୮ । ଅସୁ । ପ୍ରାଣ ଏ ଦୁଇନାମ ପ୍ରାଣର ।

୯ । ଜୀବ । ଅସୁଧାରଣ ଏ ଦୁଇନାମ ପ୍ରାଣ ଧାରଣର ।

୧୦ । ଆୟୁସ୍ । ଜୀବିତକାଳ ଏ ଦୁଇନାମ ଜୀବିତକାଳର ।

୧୧ । ଜୀବାତୁ । ଜୀବନୌଷଧ ଏ ଦୁଇନାମ ଜୀବନୌଷଧର ।

# ବୈଶ୍ୟବର୍ଗଃ ।

[୧] ଊରବ୍ୟା ଊରୁଜା ଅର୍ଯ୍ୟା ବୈଶ୍ୟା ଭୂମିସ୍ପୃଶୋ ବିଶଃ ।
[୨] ଆଜୀବୋ ଜୀବିକା ବାର୍ତ୍ତା ବୃତ୍ତିର୍ବର୍ତ୍ତନ ଜୀବନେ ॥
[୩] ସ୍ତ୍ରିୟାଂ କୃଷିଃ ପାଶୁପାଲ୍ୟଂ ବାଣିଜ୍ୟଂ ଚେତି ବୃତ୍ତୟଃ ।
[୪] ସେବା ଶ୍ୱବୃତ୍ତି [୫] ରନୃତଂ କୃଷି [୬] ରୁଞ୍ଛଶିଳଂ ତ୍ୱୃତଂ ॥
[୭-୮] ଦ୍ୱେ ଯାଚିତା ଯାଚିତୟୋ ର୍ଯଥା ସଂଖ୍ୟଂ ମୃତାମୃତେ ।
[୯] ସତ୍ୟାନୃତଂ ବଣିଗ୍ଭାବଃ [୧୦] ସ୍ୟାଦୃଣଂ ପର୍ଯ୍ୟୁଦଞ୍ଚନଂ ॥
ଉଦ୍ଧାରେ [୧୧] ର୍ଥପ୍ରୟୋଗସ୍ତୁ କୁସୀଦଂ ବୃଦ୍ଧିଜୀବିକା ।
[୧୨] ଯାଚ୍ଞାପ୍ତଂ ଯାଚିତକଂ [୧୩] ନିମୟାଦାପମିତ୍ୟକଂ ।
[୧୪-୧୫] ଉତ୍ତମର୍ଣ୍ଣାଧମର୍ଣ୍ଣୌ ଦ୍ୱୌ ପ୍ରୟୋକ୍ତୃ ଗ୍ରାହକୌ କ୍ରମାତ୍ ।

---

ବୈଶ୍ୟବର୍ଗଃ ।

୧ । ଊରବ୍ୟ । ଊରୁଜ । ଅର୍ଯ୍ୟ । ବୈଶ୍ୟ । ଭୂମିସ୍ପୃଶ୍ । ବିଶ୍ ଏ ଛନାମ ବୈଶ୍ୟର ।
୨ । ଆଜୀବ । ଜୀବିକା । ବାର୍ତ୍ତା । ବୃତ୍ତି । ବର୍ତ୍ତନ । ଜୀବନ ଏ ଛନାମ ଜୀବନଉପାୟର ।
୩ । କୃଷି । ପାଶୁପାଲ୍ୟ । ବାଣିଜ୍ୟ ଏ ତିନିନାମ ବୃତ୍ତିର ।
୪ । ସେବା । ଶ୍ୱବୃତ୍ତି ଏ ଦୁଇନାମ ସେବାର ।
୫ । ଅନୃତ । କୃଷି ଏ ଦୁଇନାମ କୃଷିର ।
୬ । ଉଞ୍ଛଶିଳ । ଋତ ଏ ଦୁଇନାମ ଉଞ୍ଛବୃତ୍ତିର ।
୭ । ଯାଚିତର ନାମକୁ ମୃତ କହି । ୮ । ଅଯାଚିତର ନାମକୁ ଅମୃତ କହି ।
୯ । ସତ୍ୟାନୃତ । ବଣିଗ୍ଭାବ ଏ ଦୁଇନାମ ବାଣିଜ୍ୟର ।
୧୦ । ଋଣ ପର୍ଯ୍ୟୁଦଞ୍ଚନ । ଉଦ୍ଧାର ଏ ତିନିନାମ ଋଣର ।
୧୧ । ପ୍ରୟୋଗ । କୁସୀଦ । ବୃଦ୍ଧିଜୀବିକା ଏ ତିନିନାମ ଋଣଦାନ ବ୍ୟବସାୟର ।
୧୨ । ଯାଚ୍ଞାଦ୍ୱାରେ ପ୍ରାପ୍ତ ଦ୍ରବ୍ୟର ନାମକୁ ଯାଚିତ କହି ।
୧୩ । ପରିବର୍ତ୍ତନ ଦ୍ୱାରେ ପ୍ରାପ୍ତର ନାମକୁ ଆପମିତ୍ୟକ କହି ।
୧୪ । ଋଣଦାତାର ନାମକୁ ଉତ୍ତମର୍ଣ୍ଣ କହି ।
୧୫ । ଋଣଗ୍ରହଣକାରୀ ନାମକୁ ଅଧମର୍ଣ୍ଣ କହି ।

[୧] କୁସୀଦକୋ ବାର୍ଦ୍ଧୁଷିକୋ ବୃଦ୍ଧ୍ୟାଜୀବଶ୍ଚ ବାର୍ଦ୍ଧୁଷିଃ ॥

[୨] କ୍ଷେତ୍ରାଜୀବଃ କର୍ଷକଶ୍ଚ କୃଷିକଶ୍ଚ କୃଷୀବଲଃ ।

[୩-୪] କ୍ଷେତ୍ରଂ ବ୍ରୈହେୟ ଶାଲେୟଂ ବ୍ରୀହିଶାଲ୍ୟୁଦ୍ଭବୋଚିତଂ ॥

[୫] ଯବ୍ୟଂ ଯବକ୍ୟଂ ଯଷ୍ଟିକ୍ୟଂ ଯବାଦିଭବନଂ ହି ଯତ୍

[୬-୭-୮-୯-୧୦] ତିଲ୍ୟଂ ତୈଲୀନବନ୍ମାଷୋମାନୁଭଙ୍ଗାଦ୍ଵିରୂପତା ॥

[୧୧] ମୌଦ୍ଗୀନଂ [୧୨] କୌଦ୍ରବୀଣାଦି ଶେଷୋଧାନ୍ୟୋଦ୍ଭବକ୍ଷମଂ

[୧୩] ଶୀତାକୃତଂ ତୂପ୍ତକୃଷ୍ଟଂ [୧୪] ସୀତ୍ୟଂ କୃଷ୍ଟଂ ଚ ହଲ୍ୟବତ୍ ।

[୧୫] ତ୍ରିଗୁଣାକୃତଂ ତୃତୀୟାକୃତଂ ତ୍ରିହଲ୍ୟଂ ତ୍ରିସୀତ୍ୟମପି ତସ୍ମିନ୍ ॥

[୧୬] ଦ୍ଵିଗୁଣାକୃତେ ତୁ ସର୍ବଂ ପୂର୍ବଂ ଶମ୍ବାକୃତମପୀହ ।

---

୧ । କୁସୀଦକ । ବାର୍ଦ୍ଧୁଷିକ । ବୃଦ୍ଧ୍ୟାଜୀବ । ବାର୍ଦ୍ଧୁଷି ଏ ଚାରିନାମ ସୁଦଖାଉର ।

୨ । କ୍ଷେତ୍ରାଜୀବ । କର୍ଷକ । କୃଷିକ । କୃଷୀବଲ ଏ ଚାରିନାମ କୃଷକର ।

୩ । ବ୍ରୀହିନାମକ ଧାନ୍ୟକ୍ଷେତ୍ର ନାମକୁ ବ୍ରୈହେୟ କହି ।

୪ । ଶାଳିଧାନ୍ୟ ଉତ୍ପାଦକ କ୍ଷେତ୍ରକୁ ଶାଲେୟ କହି ।

୫ । ଯବ୍ୟ । ଯବକ୍ୟ । ଯଷ୍ଟିକ୍ୟ ଏ ତିନିନାମ ଯବଉତ୍ପାଦକ କ୍ଷେତ୍ରର ।

୬ । ତିଲ୍ୟ । ତୈଲୀନ ଏ ଦୁଇନାମ ତିଳଉତ୍ପାଦକ କ୍ଷେତ୍ରର ।

୭ । ମାଷ୍ୟ । ମାଷୀଣ ଏ ଦୁଇନାମ ମାଷ ଅର୍ଥାତ୍ ବ୍ରୀହିଉତ୍ପାଦକ କ୍ଷେତ୍ରର ।

୮ । ଉମ୍ୟ । ଔମୀନ ଏ ଦୁଇନାମ ଶଣଉତ୍ପାଦକ କ୍ଷେତ୍ରର ।

୯ । ଅଣବ୍ୟ । ଆଣବୀନ ଏ ଦୁଇନାମ ଚିନାଧାନଉତ୍ପାଦକ କ୍ଷେତ୍ରର ।

୧୦ । ଭଙ୍ଗ୍ୟ । ଭାଙ୍ଗୀନ ଏ ଦୁଇନାମ ଭଙ୍ଗାଦାଲ ଉତ୍ପତ୍ତିସ୍ଥାନର ।

୧୧ । ମୁଗର କ୍ଷେତ୍ରକୁ ମୌଦ୍ଗୀନ କହି ।

୧୨ । କୌଦ୍ରବୀଣ । ଚୀନକୀନ ଏ ଦୁଇନାମ କୋଦ୍ରଅ କ୍ଷେତ୍ରର ।

୧୩ । ବୀଜାକୃତ । ଉପ୍ତକୃଷ୍ଟ ଏ ଦୁଇନାମ ବୀଜବପନାନନ୍ତର ଚଷ ହେବା ଭୂମିର ।

୧୪ । ସୀତ୍ୟ । କୃଷ୍ଟ । ହଲ୍ୟ ଏ ତିନିନାମ ଏକଥର ଚଷା ଭୂମିର ।

୧୫ । ତ୍ରିଗୁଣାକୃତ । ତୃତୀୟାକୃତ । ତ୍ରିହଲ୍ୟ । ତ୍ରିସୀତ୍ୟ ଏ ଚାରିନାମ ତିନିଥର ଚାଷ
ହେବା ଭୂମିର ।

୧୬ । ଦ୍ଵିଗୁଣାକୃତ । ଦ୍ଵିତୀୟାକୃତ । ଦ୍ଵିହଲ୍ୟ । ଦ୍ଵିସୀତ୍ୟ । ଶମ୍ବାକୃତ ଏ ପାଞ୍ଚନାମ ଦୁଇ-
ଥର ଚଷ ହେବା ଭୂମିର ।

[୧-୨] ଦ୍ରୋଣାଢ଼କାଦ ବାପାଦୌ ଦ୍ରୌଣିକାଢ଼କିକାଦୟଃ ।
[୩] ଖାରୀବାପସ୍ତୁ ଖାରୀକ ଉତ୍ତମର୍ଣ୍ଣାଦୟସ୍ତ୍ରିଷୁ ।
[୪] ପୁନ୍ନପୁଂସକୟୋର୍ବପ୍ରଃ କେଦାରଃ କ୍ଷେତ୍ର [୫] ମସ୍ୟ ତୁ ।
କୈଦାରକଂ ସ୍ୟାତ୍କୈଦାର୍ଯ୍ୟଂ କ୍ଷେତ୍ର କୈଦାରିକଂ ଗଣେ ।
[୬] ଲେଷ୍ଟାନି ଲେଷ୍ଟବଃ ପୁଂସି [୭] କୋଟିଶୋ ଲୋଷ୍ଟଭେଦନଂ
[୮] ପ୍ରାଜନଂ ତୋଦନଂ ତୋତ୍ରଂ [୯] ଖନିତ୍ରମବଦାରଣଂ ।
[୧୦] ଦାତ୍ରଂ ଲବିତ୍ର[୧୧]ମାବନ୍ଧୋ ଯୋତ୍ରଂ ଯୋକ୍ତ୍ର[୧୨]ମଥୋଫଳଂ
ନିରୀଷଂ କୁଟକଂ [୧୩] ଫାଳଃ କୃଷିକୋ [୧୪]ଲାଙ୍ଗଳଂ ହଳଂ
ଗୋଦାରଣଂ ଚ ସୀରେ [୧୫] ଽଥ ଶମ୍ୟା ସ୍ତ୍ରୀ ଯୁଗକୀଳକଃ ।
[୧୬] ଈଷା ଲାଙ୍ଗଳଦଣ୍ଡଃ ସ୍ୟାତ୍ [୧୭] ସୀତା ଲାଙ୍ଗଳପଦ୍ଧତିଃ ।

---

୧ । ଦ୍ରୋଣପରିମିତଧାନ୍ୟବପନ କ୍ଷେତ୍ରକୁ ଦ୍ରୌଣିକ କହୁ ।
୨ । ଅଢ଼କପରିମିତ ଧାନ୍ୟବପନ ଯୋଗ୍ୟ ଭୂମିକି ଅଢ଼କକ କହୁ ।
୩ । ଖାରୀବାପ । ଖାରୀକ ଏ ଦୁଇନାମ ଖାରୀପରିମିତଧାନ୍ୟ ବପନ ଯୋଗ୍ୟ ଭୂମିର ।
୪ । ବପ୍ର । କେଦାର । କ୍ଷେତ୍ର ଏ ତିନିନାମ କିଆରିର ।
୫ । କୈଦାରକ । କୈଦାର୍ଯ୍ୟ । କ୍ଷେତ୍ର । କୈଦାରିକ ଏ ଚାରିନାମ କ୍ଷେତ୍ର ସମୂହର ।
୬ । ଲୋଷ୍ଟ । ଲେଷ୍ଟୁ ଏ ଦୁଇନାମ ଟେଳା ମୃତ୍ତିକାର ।
୭ । କୋଟିଶ । ଲୋଷ୍ଟଭେଦନ ଏ ଦୁଇନାମ ଟେଳାଭଙ୍ଗା ପିଟଣର ।
୮ । ପ୍ରାଜନ । ତୋଦନ । ତୋତ୍ର ଏ ତିନିନାମ ପାଞ୍ଚଣ ବାଡ଼ିର ।
୯ । ଖନିତ୍ର । ଅବଦାରଣ ଏ ଦୁଇନାମ ଖଣତିର ।
୧୦ । ଦାତ୍ର । ଲବିତ୍ର ଏ ଦୁଇନାମ ଦାଆର ।
୧୧ । ଆବନ୍ଧ । ଯୋତ୍ର । ଯୋକ୍ତ୍ର ଏ ତିନିନାମ ଯୋତ ଦଉଡ଼ିର ।
୧୨ । ଫଳ । ନିରୀଷ । କୁଟକ ଏ ତିନିନାମ ଲଙ୍ଗଳ ମୁହାର ।
୧୩ । ଫାଳ । କୃଷିକ ଏ ଦୁଇନାମ ଲଙ୍ଗଳ ଲୁହାର ।
୧୪ । ଲାଙ୍ଗଳ । ହଳ । ଗୋଦାରଣ । ସୀର ଏ ଚାରିନାମ ଲଙ୍ଗଳର ।
୧୫ । ଶମ୍ୟା । ଯୁଗକୀଳକ ଏ ଦୁଇନାମ ଜୁଅଳ ଖୁଣ୍ଟିର ।
୧୬ । ଈଷା । ଲାଙ୍ଗଳଦଣ୍ଡ ଏ ଦୁଇନାମ ଈଷର ।
୧୭ । ସୀତା । ଲାଙ୍ଗଳପଦ୍ଧତି ଏ ଦୁଇନାମ ସିଆରର ।

[୧] ପୁଂସି ମେଧିଃ ଖଲେ ଦାରୁ ନ୍ୟଂସ୍ତ ଯତ୍ର ପଶୁବନ୍ଧନେ ।
[୨] ଆଶୁ ବ୍ରୀହିଃ ପାଟଲଃ ସ୍ୟାତ୍ [୩] ସିତଶୂକ ଯବୌ ସମୌ ।
[୪] ତୋକ୍ମସ୍ତୁ ତତ୍ର ହରିତେ [୫] କଲାୟସ୍ତୁ ସତୀଲକଃ ॥
ହରେଣୁ ଖଣ୍ଡିକୌ ଚାସ୍ମିନ୍ [୬] କୋରଦୂଷସ୍ତୁ କୋଦ୍ରବଃ
[୭] ମଙ୍ଗଲ୍ୟକୋ ମସୂରୋ [୮] ଽଥ ମକୁଷ୍ଟକମୟୁଷ୍ଟକୌ ॥
ବନମୁଦ୍ଗେ [୯] ସର୍ଷପେ ତୁ ଦ୍ୱୌ ତନ୍ତୁଭ କଦମ୍ବକୌ ।
[୧୦] ସିଦ୍ଧାର୍ଥସ୍ତ୍ୱେଷ ଧବଲୋ [୧୧] ଗୋଧୂମଃ ସୁମନଃ ସମୌ ॥
[୧୨] ସ୍ୟାଦ୍ୟାବକସ୍ତୁ କୁଲ୍ମାଷ [୧୩] ଶ୍ଚଣକୋ ହରିମନ୍ଥକଃ ।
[୧୪] ଦ୍ୱୌ ତିଲେ ତିଲପେଜଶ୍ଚ [୧୫] ତିଲପିଞ୍ଜଶ୍ଚ ନିଷ୍ଫଲେ ॥
[୧୬] କ୍ଷବଃ କ୍ଷୁଧାଭିଜନନୋ ରାଜିକା କୃଷ୍ଣିକା ସୁରୀ ।

---

୧ । ମେଢ଼ି କାଠକୁ ମେଧି କହି ।
୨ । ଆଶୁ । ବ୍ରୀହି । ପାଟଳ ଏ ତିନିନାମ ଶରତ୍କାଳ ପକ୍ୱ ଧାନ୍ୟର ।
୩ । ସିତଶୂକ । ଯବ ଏ ଦୁଇନାମ ଯବର ।
୪ । ହରିଦ୍ବର୍ଣ୍ଣ ଯବକୁ ତୋକ୍ମ କହି ।
୫ । କଲାୟ । ସତୀଲକ । ହରେଣୁ । ଖଣ୍ଡିକ ଏ ଚାରିନାମ ଛୋଟ ମଟରର ।
୬ । କୋରଦୂଷ । କୋଦ୍ରବ ଏ ଦୁଇନାମ କୋଦ୍ରଅର ।
୭ । ମଙ୍ଗଲ୍ୟକ । ମସୂର ଏ ଦୁଇନାମ ମସୂରର ।
୮ । ମକୁଷ୍ଟକ । ମୟୁଷ୍ଟକ । ବନମୁଦ୍ଗ ଏ ତିନିନାମ ବଣମୁଗର ।
୯ । ସର୍ଷପ । ତନ୍ତୁଭ । କଦମ୍ବକ ଏ ତିନିନାମ ସୋରିଷର ।
୧୦ । ସିଦ୍ଧାର୍ଥ । ଶ୍ୱେତସର୍ଷପ ଏ ଦୁଇନାମ ଧଳା ସୋରିଷର ।
୧୧ । ଗୋଧୂମ । ସୁମନ ଏ ଦୁଇନାମ ଗହମର ।
୧୨ । ଯାବକ । କୁଲ୍ମାଷ ଏ ଦୁଇନାମ କୋଳଥର ।
୧୩ । ଚଣକ । ହରିମନ୍ଥକ ଏ ଦୁଇନାମ ଚଣାର ।
୧୪ । ତିଳ । ତିଲପେଜ ଏ ଦୁଇନାମ ତିଳର ।
୧୫ । ନିଷ୍ଫଳ ତିଳକୁ ତିଲପିଞ୍ଜ କହି ।
୧୬ । କ୍ଷବ । କ୍ଷୁଧାଭିଜନକ । ରାଜିକା । କୃଷ୍ଣିକା । ଆସୁରୀ ଏ ପାଞ୍ଚନାମ ରାଇ ସୋରିଷର ।

[୧] ସ୍ତ୍ରିୟୌ କଙ୍ଗୁ ପ୍ରିୟଙ୍ଗୂ ଦ୍ୱେ [୨] ଅତସୀ ସ୍ୟାଦୁମା କ୍ଷୁମା ।
[୩] ମାତୁଲାନୀ ତୁ ଭଙ୍ଗାୟାଂ [୪] ବ୍ରୀହିଭେଦସ୍ତ୍ୱଣୁଃ ପୁମାନ୍ ।
[୫] କିଂଶାରୁଃ ଶସ୍ୟଶୂକଂ ସ୍ୟାତ୍ [୬] କଣିଶଂ ଶସ୍ୟମଞ୍ଜରୀ ।
[୭] ଧାନ୍ୟଂ ବ୍ରୀହିଃ ସ୍ତମ୍ବକରିଃ [୮] ସ୍ତମ୍ବୋ ଗୁଚ୍ଛସ୍ତୃଣାଦିନଃ ।
[୯] ନାଡ଼ୀ ନାଲଂ ଚ କାଣ୍ଡୋଽସ୍ୟ [୧୦] ପଲାଲୋଽସ୍ତ୍ରୀ ସ ନିଷ୍ଫଳ
[୧୧] କଡଙ୍ଗରୋ ବୁଷ କ୍ଲୀବେ [୧୨] ଧାନ୍ୟତ୍ୱଚି ପୁମାଂସ୍ତୁଷଃ ।
[୧୩] ଶୂକୋଽସ୍ତ୍ରୀ ଶ୍ଲକ୍ଷ୍ଣ ତୀକ୍ଷ୍ଣାଗ୍ରେ [୧୪] ଶମୀ ଶିମ୍ବା ତ୍ରିଷୂତ୍ତରେ ।
[୧୫] ଋଦ୍ଧମାବସିତଂ ଧାନ୍ୟଂ [୧୬] ପୂତଂ ତୁ ବହୁଲୀକୃତଂ ।
[୧୭] ମାଷାଦୟଃ ଶମୀ ଧାନ୍ୟେ [୧୮] ଶୂକଧାନ୍ୟେ ଯବାଦୟଃ ॥

---

୧ । କଙ୍ଗୁ । ପ୍ରିୟଙ୍ଗୁ ଏ ଦୁଇନାମ କାଙ୍ଗୁ ଧାନ୍ୟର ।
୨ । ଅତସୀ । ଉମା । କ୍ଷୁମା ଏ ତିନିନାମ ପେଷିର ।
୩ । ମାତୁଲାନୀ । ଭଙ୍ଗା ଏ ଦୁଇନାମ ଶଣର । ୪ । ବ୍ରୀହିଧାନ୍ୟକୁ ଅଣୁ କହି ।
୫ । କିଂଶାରୁ । ଶସ୍ୟଶୂକ ଏ ଦୁଇନାମ ଶସ୍ୟଶୁଙ୍ଗର ।
୬ । କଣିଶ । ଶସ୍ୟମଞ୍ଜରୀ ଏ ଦୁଇନାମ ଶସ୍ୟମଞ୍ଜରୀର ।
୭ । ଧାନ୍ୟ । ବ୍ରୀହି । ସ୍ତମ୍ବକରି ଏ ତିନିନାମ ଧାନ୍ୟର ।
୮ । ସ୍ତମ୍ବ । ଗୁଚ୍ଛ ଏ ଦୁଇନାମ ତୃଣାଦି ବୋଝର ।
୯ । ନାଡ଼ୀ । ନାଳ । କାଣ୍ଡ ଏ ତିନିନାମ ଶସ୍ୟନାଡ଼ର ।
୧୦ । ନିଷ୍ଫଳ ଶସ୍ୟର ନାଡ଼କୁ ପଲାଳ କହି ।
୧୧ । କଡଙ୍ଗର । ବୁଷ ଏ ଦୁଇନାମ ଶସ୍ୟ ଅଗାଡ଼ର ।
୧୨ । ଶସ୍ୟ ଚୋପାକୁ ତୁଷ କହି ।
୧୩ । ତୀକ୍ଷ୍ଣାଗ୍ର ଧାନ୍ୟର ନାମକୁ ଶୂକ କହି ।
୧୪ । ଶମୀ । ଶିମ୍ବା ଏ ଦୁଇନାମ ଶିମ୍ବର ।
୧୫ । ଋଦ୍ଧ । ଆବସିତ ଏ ଦୁଇନାମ ରାଶୀକୃତ ଧାନ୍ୟର ।
୧୬ । ପୂତ । ବହୁଳୀକୃତ ଏ ଦୁଇନାମ ଉଗାଡ଼ିତହୁତ ଧାନ୍ୟର ।
୧୭ । ମାଷାଦି । ଶମୀଧାନ୍ୟ ଏ ଦୁଇନାମ ବୁଟପ୍ରଭୃ ଧାନ୍ୟର ।
୧୮ । ଯବାଦି । ଶୂକଧାନ୍ୟ ଏ ଦୁଇନାମ ଶିଙ୍ଗଧାନ୍ୟର ।

[୧] ଶାଳୟଃ କଳମାଦ୍ୟାଶ୍ଚ ଷଷ୍ଟିକାଦ୍ୟାଶ୍ଚ ପୁଂସ୍ୟମୀ ।
[୨] ତୃଣଧାନ୍ୟାନି ନୀବାରାଃ [୩] ସ୍ତ୍ରୀ ଗବେଧୁର୍ଗବେଧୁକା ।
[୪] ଅୟୋଗ୍ରଂ ମୁଷଲୋଽସ୍ତ୍ରୀ ସ୍ୟା [୫] ଦୁଦୂଖଲମୁଲୂଖଲଂ ।
[୬] ପ୍ରସ୍ଫୋଟନଂ ଶୂର୍ପମସ୍ତ୍ରୀ [୭] ଚାଳନୀ ତିତଉଃ ପୁମାନ୍ ।
[୮] ସ୍ୟୂତ ପ୍ରସେବୌ [୯] କାଣ୍ଡୋଳ ପିଟୌ [୧୦] କଟ କିଳଞ୍ଜକୌ
ସମାନୌ [୧୧] ରସବତ୍ୟାଂ ତୁ ପାକସ୍ଥାନ ମହାନସେ ।
[୧୨] ପୌରୋଗବସ୍ତଦଧ୍ୟକ୍ଷଃ [୧୩] ସୂପକାରାସ୍ତୁ ବଲ୍ଲବାଃ ।
ଆରାଳିକା ଆନ୍ଧସିକା ସୂଦାଔଦନିକା ଗୁଣାଃ ।
[୧୪] ଆପୂପିକଃ କାନ୍ଦବିକୋ ଭକ୍ଷ୍ୟକାର ଇମେ ତ୍ରିଷୁ ।
[୧୫] ଅଶ୍ମନ୍ତ ମୁଦ୍ଧାନମଧିଶ୍ରୟଣୀ ଚୁଲ୍ଲିରନ୍ତିକା ।

---

୧ । ଷଷ୍ଟିକାଦି ଧାନ୍ୟର ନାମକୁ ଶାଳୀ କହି ।
୨ । ତୃଣଧାନ୍ୟ । ନୀବାର ଏ ଦୁଇନାମ ତାଲୁଚା ଧାନ୍ୟର ।
୩ । ଗବେଧୁ । ଗବେଧୁକା ଏ ଦୁଇନାମ ଗଡଗଡ଼ାର ।
୪ । ଅୟୋଗ୍ର । ମୁଷଳ ଏ ଦୁଇନାମ ପାହୁରଣୀର ।
୫ । ଉଦୂଖଳ । ଉଲୂଖଳ ଏ ଦୁଇନାମ ଢେଙ୍କି ଉଖୁଡ଼ିର ।
୬ । ପ୍ରସ୍ଫୋଟନ । ଶୂର୍ପ ଏ ଦୁଇନାମ କୁଲାର ।
୭ । ଚାଳନୀ । ତିତଉ ଏ ଦୁଇନାମ ଚାଲଣୀର ।
୮ । ସ୍ୟୂତ । ପ୍ରସେବ ଏ ଦୁଇନାମ ୫ କଣ୍ଠ ଥଳେ ବସ୍ତାର ।
୯ । କାଣ୍ଡୋଳ । ପିଟ ଏ ଦୁଇନାମ ଧାନ ରଖିବା ଡୋଲର ।
୧୦ । କଟ । କିଳଞ୍ଜକ ଏ ଦୁଇନାମ ପରୁଆ ମସିଣାର ।
୧୧ । ରସବତୀ । ପାକସ୍ଥାନ । ମହାନସ ଏ ତିନିନାମ ରନ୍ଧନ ଗୃହର ।
୧୨ । ପାକଗୃହର ଅଧ୍ୟକ୍ଷଙ୍କୁ ପୌରୋଗବ କହି ।
୧୩ । ସୂପକାର । ବଲ୍ଲବ । ଆରାଳିକ । ଆନ୍ଧସିକ । ସୂଦ । ଔଦନିକ । ଗୁଣ ଏ ସାତନାମ ପାଚକର ।
୧୪ । ଆପୂପିକ । କାନ୍ଦବିକ । ଭକ୍ଷ୍ୟକାର ଏ ତିନିନାମ ପିଷ୍ଟକ ପାଚକର ।
୧୫ । ଅଶ୍ମନ୍ତ । ଉଦ୍ଧାନ । ଅଧିଶ୍ରୟଣୀ । ଚୁଲ୍ଲୀ । ଅନ୍ତିକା ଏ ପାଞ୍ଚନାମ ଚୁଲ୍ଲୀର ।

[୧] ଅଙ୍ଗାରଧାନିକାଙ୍ଗାରଶକଟ୍ୟପି ହସନ୍ତ୍ୟପି ।
ହସନ୍ୟପ୍ୟ [୨] ଽଥ ନ ସ୍ତ୍ରୀ ସ୍ୟାଦଙ୍ଗାରେଽଲ୍ମୁକଂ ।
[୩] କ୍ଲୀବେଽମ୍ବରୀଷଂ ଭ୍ରାଷ୍ଟ୍ରୋ ନା [୪] କନ୍ଦୁର୍ବା ସ୍ୱେଦନୀ ସ୍ତ୍ରିୟାଂ ।
[୫] ଅଳଞ୍ଜରଃ ସ୍ୟାନ୍ମଣିକଂ [୬] କର୍କର୍ଯ୍ୟାଳୁର୍ଗଳନ୍ତିକା ।
[୭] ପିଠରଃ ସ୍ଥାଲ୍ୟୁଖା କୁଣ୍ଡଂ [୮] କଲଶସ୍ତୁ ଦ୍ୱୟୋର୍ଘଟଃ ।
ଘଟଃ କୁଟ ନିପା [୯] ବସ୍ତ୍ରୀ ଶରାବୋ ବର୍ଦ୍ଧମାନକଃ ।
[୧୦] ଋଜୀଷଂ ପିଷ୍ଟପଚନଂ [୧୧] କଂସୋଽସ୍ତ୍ରୀ ପାନଭାଜନଂ ।
[୧୨] କୁତୂଃ କୃତ୍ତେଃ ସ୍ନେହପାତ୍ରଂ [୧୩] ସୈବାଳ୍ପା କୁତୁପଃ ପୁମାନ୍
[୧୪] ସର୍ବମାବପନଂ ଭାଣ୍ଡଂ ପାତ୍ରାମତ୍ରେ ଚ ଭାଜନଂ ।
[୧୫] ଦର୍ବିଃ କମ୍ବିଃ ଖଜାକା ଚ ସ୍ୟା [୧୬] ତ୍ତର୍ଦ୍ଦୂର୍ଦାରୁହସ୍ତକଃ ।

---

୧ । ଅଙ୍ଗାରଧାନିକା । ଅଙ୍ଗାରଶକଟୀ । ହସନ୍ତୀ । ହସନୀ ଏ ଚାରିନାମ ନିଆଁ ଅଙ୍ଗେଠିଆ
୨ । ଅଙ୍ଗାର । ଅଲାତ । ଉଲ୍ମୁକ ଏ ତିନିନାମ ଅଙ୍ଗାରର ।
୩ । ଅମ୍ବରୀଷ । ଭ୍ରାଷ୍ଟ୍ର ଏ ଦୁଇନାମ ଭଜାଭଜା ହାଣ୍ଡିର ।
୪ । କନ୍ଦୁ । ସ୍ୱେଦନୀ ଏ ଦୁଇନାମ ଲୋହମୟ କରେଇର ।
୫ । ଅଳଞ୍ଜର । ମଣିକ ଏ ଦୁଇନାମ ଜାହ୍ନାଘର ।
୬ । କର୍କରୀ । ଆଳୁ । ଗଳନ୍ତିକା ଏ ତିନିନାମ ଜଳପାତ୍ର ଅର୍ଥାତ୍ ଝରର ।
୭ । ପିଠର । ସ୍ଥାଲୀ । ଉଖା । କୁଣ୍ଡ ଏ ଚାରିନାମ ହାଣ୍ଡିର ।
୮ । କଲଶ । ଘଟ । କୁଟ । ନିପ ଏ ଚାରିନାମ ପାଣି ମାଠିଆର ।
୯ । ଶରାବ । ବର୍ଦ୍ଧମାନକ ଏ ଦୁଇନାମ ସରାର ।
୧୦ । ଋଜୀଷ । ପିଷ୍ଟପଚନ ଏ ଦୁଇନାମ ପିଷ୍ଟକପାକ କପାଳର ( ଚେଲକଣିର )
୧୧ । କଂସ । ପାନଭାଜନ ଏ ଦୁଇନାମ କଂସାର ଗିନାର ।
୧୨ । କୁତୂ । ସ୍ନେହପାତ୍ର ଏ ଦୁଇନାମ ଚର୍ମନିର୍ମିତ ତେଲର କୁମ୍ପାର ।
୧୩ । କ୍ଷୁଦ୍ରକୁମ୍ପାର ନାମକୁ କୁତୁପ କହି ।
୧୪ । ଆବପନ । ଭାଣ୍ଡ । ଅମତ୍ର । ପାତ୍ର । ଭାଜନ ଏ ପାଞ୍ଚନାମ ସାମାନ୍ୟ ଭାଣ୍ଡର ।
୧୫ । ଦର୍ବି । କମ୍ବି । ଖଜାକା ଏ ତିନିନାମ ଲୌହନିର୍ମିତ ଚାଟୁର ।
୧୬ । ତର୍ଦ୍ଦୂ । ଦାରୁହସ୍ତକ ଏ ଦୁଇନାମ ଦାଉ ବେଣ୍ଟଯୁକ୍ତ ଲୌହମୟ ଚାଟୁର ।

[୧] ଅସ୍ତ୍ରୀ ଶାକଂ ହରିତକଂ ଶିଗ୍ରୁ [୨] ରସ୍ୟ ତୁ ନାଡ଼ିକା ॥
କଡ଼ମ୍ବଶ୍ଚ କଲମ୍ବଶ୍ଚ [୩] ବେସବାର ଉପସ୍କରଃ ।
[୪] ତିନ୍ତିଡୀକଂ ଚ ଚୁକ୍ରଂ ଚ ବୃକ୍ଷାମ୍ଳ [୫] ମଥ ବେଲ୍ଲଜଂ ॥
ମରୀଚଂ କୋଲକଂ କୃଷ୍ଣମୂଷଣଂ ଧର୍ମ୍ମପତ୍ତନଂ ।
[୬] ଜୀରକୋ ଜରଣୋଽଜାଜୀ କଣାଃ [୭] କୃଷ୍ଣେ ତୁ ଜୀରକେ ॥
ସୁଷବୀ କାରବୀ ପୃଥ୍ୱୀ ପୃଥୁଃ କାଲୋପକୁଞ୍ଚିକା ।
[୮] ଆର୍ଦ୍ରକଂ ଶୃଙ୍ଗବେରଂ ସ୍ୟା [୯] ଦଥ ଛତ୍ରା ବିତୁନ୍ନକଂ ॥
କୁସ୍ତୁମ୍ବୁରୁ ଚ ଧନ୍ୟାକ [୧୦] ମଥ ଶୁଣ୍ଠୀ ମହୌଷଧଂ ।
ସ୍ତ୍ରୀନପୁଂସକୟୋର୍ବିଶ୍ୱଂ ନାଗରଂ ବିଶ୍ୱଭେଷଜଂ ॥
[୧୧] ଆରନାଳକ ସୌବୀର କୁଲ୍ମାଷାଭିଷୁତାନି ଚ ।
ଅବନ୍ତିସୋମ ଧାନ୍ୟାମ୍ଳ କୁଞ୍ଜଲାନି ଚ କାଞ୍ଜିକେ ॥

---

୧ । ଶାକ । ହରିତକ । ଶିଗ୍ରୁ ଏ ତିନିନାମ ସାମାନ୍ୟ ଶାକର ।

୨ । କଡମ୍ବ । କଲମ୍ବ ଏ ଦୁଇନାମ ଶାକର ଡଙ୍କର ।

୩ । ବେସବାର । ଉପସ୍କର ଏ ଦୁଇନାମ ବେସରପକା ଚୂର୍ଣ୍ଣର ।

୪ । ତିନ୍ତିଡ଼ୀକ । ଚୁକ୍ର । ବୃକ୍ଷାମ୍ଳ ଏ ତିନିନାମ ଅମ୍ବିଲ ବାଇଙ୍ଗନର ।

୫ । ବେଲ୍ଲଜ । ମରୀଚ । କୋଲକ । କୃଷ୍ଣ । ଊଷଣ । ଧର୍ମ୍ମପତ୍ତନ ଏ ଛନାମ ଗୋଲମରିଚର ।

୬ । ଜୀରକ । ଜରଣ । ଅଜାଜୀ । କଣା ଏ ଚାରିନାମ ଜୀରର ।

୭ । କୃଷ୍ଣଜୀରକ । ସୁଷବୀ । କାରବୀ । ପୃଥ୍ୱୀ । ପୃଥୁ । କାଳା । ଉପକୁଞ୍ଚିକା ଏ ସାତ-ନାମ କଳାଜୀରର ।

୮ । ଆର୍ଦ୍ରକ । ଶୃଙ୍ଗବେର ଏ ଦୁଇନାମ ଅଦାର ।

୯ । ଛତ୍ରା । ବିତୁନ୍ନକ । କୁସ୍ତୁମ୍ବୁରୁ । ଧନ୍ୟାକ । ଧନ୍ୟା ଏ ପାଞ୍ଚନାମ ଧନିଆର ।

୧୦ । ଶୁଣ୍ଠୀ । ମହୌଷଧ । ବିଶ୍ୱ । ନାଗର । ବିଶ୍ୱଭେଷଜ ଏ ପାଞ୍ଚନାମ ଶୁଣ୍ଠିର ।

୧୧ । ଆରନାଳକ । ସୌବୀର । କୁଲ୍ମାଷ । ଅଭିଷୁତ । ଅବନ୍ତିସୋମ । ଧାନ୍ୟାମ୍ଳ । କୁଞ୍ଜଲ । କାଞ୍ଜିକା ଏ ଅଠନାମ କାଞ୍ଜିର ।

[୧] ସହସ୍ରବେଧି ଜତୁକଂ ବାହ୍ଲୀକଂ ହିଙ୍ଗୁ ରାମଠଂ ।
[୨] ତତ୍ପତ୍ରୀ କାରବୀ ପୃଥ୍ୱୀ ବାଷ୍ପିକା କବରୀ ପୃଥୁଃ ॥
[୩] ନିଶାହ୍ୱା କାଞ୍ଚନୀ ପୀତା ହରିଦ୍ରା ବରବର୍ଣ୍ଣିନୀ ।
[୪] ସାମୁଦ୍ରଂ ଯତ୍ତୁ ଲବଣମକ୍ଷୀବଂ ବଶିରଂ ଚ ତତ୍ ॥
[୫] ସୈନ୍ଧବୋଽସ୍ତ୍ରୀ ଶୀତଶିବଂ ମାଣିମନ୍ଥଂ ଚ ସିନ୍ଧୁଜେ ।
[୬] ରୌମକଂ ବସୁକଂ [୭] ପାକ୍ୟଂ ବିଡଂ ଚ କୃତକେ ଦ୍ୱୟଂ ॥
[୮] ସୌବର୍ଚ୍ଚଲେଽକ୍ଷରୁଚକେ [୯] ତିଲକଂ ତତ୍ର ମେଚକେ ।
[୧୦] ମତ୍ସ୍ୟଣ୍ଡୀ ଫାଣିତଂ ଖଣ୍ଡବିକାରେ [୧୧] ଶର୍କରା ସିତା ॥
[୧୨] କୂର୍ଚ୍ଚିକା କ୍ଷୀରବିକୃତିଃ ସ୍ୟାତ୍ [୧୩] ରସାଳା ତୁ ମାର୍ଜ୍ଜିତା ।
[୧୪] ସ୍ୟାତ୍ତେମନଂ ତୁ ନିଷ୍ଠାନଂ ତ୍ରିଲିଙ୍ଗା ବାସିତାବଧେଃ ॥

---

୧ । ସହସ୍ରବେଧି । ଜତୁକ । ବାହ୍ଲୀକ । ହିଙ୍ଗୁ । ରାମଠ ଏ ପାଞ୍ଚନାମ ହିଙ୍ଗୁର ।
୨ । ହିଙ୍ଗୁପତ୍ରୀ । କାରବୀ । ପୃଥ୍ୱୀ । ବାଷ୍ପିକା । କବରୀ ଏ ପାଞ୍ଚନାମ ହିଙ୍ଗୁ ଷୁଦ୍ରପନର ।
୩ । ନିଶା । କାଞ୍ଚନୀ । ପୀତା । ହରିଦ୍ରା । ବରବର୍ଣ୍ଣିନୀ ଏ ପାଞ୍ଚନାମ ହଳଦୀର ।
୪ । ଅକ୍ଷୀବ । ବଶିର । ସାମୁଦ୍ରଲବଣ ଏ ତିନିନାମ ସାମୁଦ୍ରିକ ଲବଣର ।
୫ । ସୈନ୍ଧବ । ଶୀତଶିବ । ମାଣିମନ୍ଥ । ସିନ୍ଧୁଜ ଏ ଚାରିନାମ ସୈନ୍ଧବ ଲବଣର ।
୬ । ରୌମକ । ବସୁକ ଏ ଦୁଇନାମ ସାମ୍ବରୀ ଲବଣର ।
୭ । ପାକ୍ୟ । ବିଡ । କୃତକ ଏ ତିନିନାମ କଚଲବଣର ।
୮ । ସୌବର୍ଚ୍ଚଳ । ଅକ୍ଷ । ରୁଚକ ଏ ତିନିନାମ ସଞ୍ଚଳଲବଣର ।
୯ । କୃଷ୍ଣବର୍ଣ୍ଣ ସଞ୍ଚ ଲବଣକୁ ତିଳକ କହି ।
୧୦ । ମତ୍ସ୍ୟଣ୍ଡୀ । ଫାଣିତ ଏ ଦୁଇନାମ ଖଣ୍ଡର ।
୧୧ । ଶର୍କରା । ସିତା ଏ ଦୁଇନାମ ବଦର ।
୧୨ । କୂର୍ଚ୍ଚିକା । କ୍ଷୀରବିକୃତି ଏ ଦୁଇନାମ ଛେନାର ।
୧୩ । ରସାଳା । ମାର୍ଜ୍ଜିତା ଏ ଦୁଇନାମ ପଞ୍ଚାମୃତର ।
୧୪ । ତେମନ । ନିଷ୍ଠାନ ଏ ଦୁଇନାମ ସାମାନ୍ୟ ବ୍ୟଞ୍ଜନର ।

[୧] ଶୂଲାକୃତଂ ଭଟିତ୍ରଂ ସ୍ୟାଚ୍ଛୂଲ୍ୟ [୨] ମୁଖ୍ୟଂ ତୁ ପୈଠରଂ ।
[୩] ପ୍ରଣୀତମୁପସମ୍ପନ୍ନଂ [୪] ପ୍ରୟସ୍ତଂ ସ୍ୟାତ୍ ସୁସଂସ୍କୃତଂ ॥
[୫] ସ୍ୟାତ୍ ପିଚ୍ଛିଲଂ ତୁ ବିଜିଲଂ [୬] ସମ୍ମୃଷ୍ଟଂ ଶୋଧିତଂ ସମେ ।
[୭] ଚିକ୍କଣଂ ମସୃଣଂ ସ୍ନିଗ୍ଧଂ [୮] ତୁଲ୍ୟେ ଭାବିତ ବାସିତେ ॥
[୯] ଆପକ୍ୱଃ ପୌଳିର ଭ୍ୟୂଷୋ [୧୦] ଲାଜାଃ ପୁଂଭୂମ୍ନି ଚାକ୍ଷତଂ ।
[୧୧] ପୃଥୁକଃ ସ୍ୟାଚ୍ଚିପିଟକୋ [୧୨] ଧାନା ଭୃଷ୍ଟଯବେ ସ୍ତ୍ରିୟାଂ ॥
[୧୩] ପୂପୋ ଽପୂପଃ ପିଷ୍ଟକଃ ସ୍ୟାତ୍ [୧୪] କରମ୍ଭୋ ଦଧିସକ୍ତବଃ ।
[୧୫] ଭିସ୍ସା ସ୍ତ୍ରୀ ଭକ୍ତମନ୍ଧୋ ଽନ୍ନମୋଦନୋ ଽସ୍ତ୍ରୀ ସ ଦୀଦିବିଃ ॥
[୧୬] ଭିସ୍ସଟା ଦଗ୍ଧିକା [୧୭] ସର୍ବ୍ବ ରସାଗ୍ରେ ମଣ୍ଡମସ୍ତ୍ରିୟାଂ ।

---

୧ । ଶୂଲାକୃତ । ଭଟିତ୍ର । ଶୂଲ୍ୟ ଏ ତିନିନାମ ଶୂଲଦ୍ୱାରା ସଂସ୍କୃତ ମାଂସଦ୍ରବ୍ୟର ।
୨ । ଉଖ୍ୟ । ପୈଠର ଏ ଦୁଇନାମ ସ୍ଥାଲୀପକ୍ୱ ମାଂସାଦି ବ୍ୟଞ୍ଜନର ।
୩ । ପ୍ରଣୀତ । ଉପସମ୍ପନ୍ନ ଏ ଦୁଇନାମ ସଂସ୍କୃତ ବ୍ୟଞ୍ଜନର ।
୪ । ପ୍ରୟତ । ସୁସଂସ୍କୃତ ଏ ଦୁଇନାମ ତୈଳାଦିସିକ୍ତ ସୁସଂସ୍କୃତ ବ୍ୟଞ୍ଜନର ।
୫ । ପିଚ୍ଛିଳ । ବିଜିଳ । ବିଜ୍ଜଳ । ଚେପ୍ଳିଳ ଏ ଚାରିନାମ ଦ୍ରବାକ୍ତ ବ୍ୟଞ୍ଜନର ।
୬ । ସମ୍ମୃଷ୍ଟ । ଶୋଧିତ ଏ ଦୁଇନାମ ଶୋଧିତ ବ୍ୟଞ୍ଜନର ।
୭ । ଚିକ୍କଣ । ମସୃଣ । ସ୍ନିଗ୍ଧ ଏ ତିନିନାମ ସ୍ନିଗ୍ଧ ବ୍ୟଞ୍ଜନର ।
୮ । ଭାବିତ । ବାସିତ ଏ ଦୁଇନାମ ବାସିତ ବ୍ୟଞ୍ଜନର ।
୯ । ଆପକ୍ୱ । ପୌଳି । ଅଭ୍ୟୂଷ ଏ ତିନିନାମ ଈଷତ୍ ପକ୍ୱ ବ୍ୟଞ୍ଜନର ।
୧୦ । ଲାଜା । ଅକ୍ଷତ ଏ ଦୁଇନାମ ଲିଆର ।
୧୧ । ପୃଥୁକ । ଚିପିଟକ ଏ ଦୁଇନାମ ଚୂଡ଼ାର ।
୧୨ । ଭଜାଜବକୁ ଧାନା କହି ।
୧୩ । ପୂପ । ଅପୂପ । ପିଷ୍ଟକ ଏ ତିନିନାମ ପିଷ୍ଟକର ।
୧୪ । କରମ୍ଭ । ଦଧିସକ୍ତୁ ଏ ଦୁଇନାମ ଦଧିମିଶ୍ରିତ ଛତୁର ।
୧୫ । ଭିସ୍ସା । ଭକ୍ତ । ଅନ୍ଧସ୍ । ଅନ୍ନ । ଓଦନ । ଦୀଦିବି ଏ ଛଅନାମ ଅନ୍ନର ।
୧୬ । ଭିସ୍ସଟା । ଦଗ୍ଧିକା ଏ ଦୁଇନାମ ଦଗ୍ଧଅନ୍ନର ।
୧୭ । ଦଧି ଦୁଗ୍ଧାଦି ଅଗ୍ରଭାଗ ନାମକୁ ମଣ୍ଡ କହି ।

[୧] ମାସରାଚାମନିସ୍ରାବା ମଣ୍ଡେ ଭକ୍ତସମୁଦ୍ଭବେ ।
[୨] ଯବାଗୂରୁଷ୍ଣିକା ଶ୍ରାଣା ବିଲେପୀ ତରଳା ଚ ସା ।
[୩] ଗବ୍ୟଂ ତ୍ରିଷୁ ଗବାଂ ସର୍ବଂ [୪] ଗୋବିଡ୍ଗୋମୟମସ୍ତ୍ରିୟାଂ ॥
[୫] ତତ୍ତୁ ଶୁଷ୍କଂ କରୀଷୋଽସ୍ତ୍ରୀ [୬] ଦୁଗ୍ଧଂ କ୍ଷୀରଂ ପୟଃ ସମଂ ।
[୭] ପୟସ୍ୟମାଜ୍ୟଦଧ୍ୟାଦି [୮] ଦ୍ରପ୍ସ୍ୟଂ ଦଧି ଘନେତରତ୍ ॥
[୯] ଘୃତମାଜ୍ୟଂ ହବିଃ ସର୍ପି [୧୦] ର୍ନବନୀତଂ ନବୋଦ୍ଧୃତଂ ।
[୧୧] ତତ୍ତୁ ହୈୟଙ୍ଗବୀନଂ ଯତ୍ ହ୍ୟୋଗୋଦୋହୋଦ୍ଭବଂ ଘୃତଂ ॥
[୧୨] ଦଣ୍ଡାହତଂ କାଳଶେୟମରିଷ୍ଟମପି ଗୋରସଃ ।
[୧୩।୧୪।୧୫] ତକ୍ରଂ ହ୍ୟୁଦଶ୍ୱିନ୍ମଥିତଂ ପାଦାମ୍ବ୍ୱର୍ଦ୍ଧାମ୍ବୁ ନିର୍ଜ୍ଜଳଂ ॥
[୧୬] ମଣ୍ଡଂ ଦଧିଭବଂ ମସ୍ତୁ [୧୭] ପୀୟୂଷୋଽଭିନବଂ ପୟଃ ।

---

୧ । ମାସର । ଆଚାମ । ନିସ୍ରାବ ଏ ତିନିନାମ ଭାତମଣ୍ଡ ଅର୍ଥାତ୍ ପେଜର ।
୨ । ଯବାଗୂ । ଉଷ୍ଣିକା । ଶ୍ରାଣା । ବିଲେପୀ । ତରଳା ଏ ପାଞ୍ଚନାମ ଯାଉର ।
୩ । ଗୋସମ୍ବନ୍ଧ ସମୁଦାୟ ଦ୍ରବ୍ୟକୁ ଗବ୍ୟ କହି ।
୪ । ଗୋବିଟ୍ । ଗୋମୟ ଏ ଦୁଇନାମ ଗୋବରର ।
୫ । ଶୁଷ୍କ ଗୋବରକୁ ( ଘଷି ) କରୀଷ ବୋଲି ।
୬ । ଦୁଗ୍ଧ । କ୍ଷୀର । ପୟସ ଏ ତିନିନାମ ଦୁଗ୍ଧର ।
୭ । ଘିଅ । ଦହିଆଦିକି ପୟସ୍ୟ କହି ।
୮ । ପାତଳାଦହିକି ଦ୍ରପ୍ସ୍ୟ କହି ।
୯ । ଘୃତ । ଆଜ୍ୟ । ହବିଷ୍ । ସର୍ପିଷ୍ ଏ ଚାରିନାମ ଘୃତର ।
୧୦ । ନବନୀତ । ନବୋଦ୍ଧୃତ ଏ ଦୁଇନାମ ଲହୁଣୀର ।
୧୧ । ସଦ୍ୟୋଜାତ ଘୃତକୁ ହୈୟଙ୍ଗବୀନ କହି ।
୧୨ । ଦଣ୍ଡାହତ । କାଳଶେୟ । ଅରିଷ୍ଟ । ଗୋରସ ଏ ଚାରିନାମ ଘୋଳଦହିର ।
୧୩ । ଏକପାଦ ଜଳଦ୍ୱାରା ମନ୍ଥିତ ଦହିକି ତକ୍ର କହି ।
୧୪ । ଅର୍ଦ୍ଧେକ ଜଳଦ୍ୱାରା ମନ୍ଥିତ ଦହିକି ଉଦଶ୍ୱିତ୍ କହି ।
୧୫ । ଜଳରହିତ ମନ୍ଥ୍ୟାଦହିକି ମଥିତ କହି ।
୧୬ । ଦହିର ଉପର ମଣ୍ଡକୁ ମସ୍ତୁ କହି ।    ୧୭ । ଅଭିନବ ଦୁଗ୍ଧକୁ ପୀୟୂଷ କହି ।

[୧] ଅଶନାୟା ବୁଭୁକ୍ଷା କ୍ଷୁଦ୍ [୨] ଗ୍ରାସସ୍ତୁ କବଳାର୍ଥକଃ ॥
[୩] ସପୀତିଃ ସ୍ତ୍ରୀ ତୁଲ୍ୟପାନଂ [୪] ସଗ୍ଧିଃ ସ୍ତ୍ରୀ ସହଭୋଜନଂ ।
[୫] ଉଦନ୍ୟା ତୁ ପିପାସାତୃଟ୍ତର୍ଷୋ [୬] ଜଗ୍ଧିସ୍ତୁ ଭୋଜନଂ ॥
ଜେମନଂ ଲେପ ଆହାରୋ ନିଘସୋ ନ୍ୟାଦ ଇତ୍ୟପି ।
[୭] ସୌହିତ୍ୟଂ ତର୍ପଣଂ ତୃପ୍ତି [୮] ଫେଲା ଭୁକ୍ତସମୁଜ୍ଝିତଂ ॥
[୯] କାମଂ ପ୍ରକାମଂ ପର୍ଯ୍ୟାପ୍ତଂ ନିକାମେଷ୍ଟଂ ଯଥେପ୍ସିତଂ ।
[୧୦] ଗୋପେ ଗୋପାଳ ଗୋସଙ୍ଖ୍ୟ ଗୋଧୁଗାଭୀରବଲ୍ଲବାଃ ॥
[୧୧] ଗୋମହିଷ୍ୟାଦିକଂ ପାଦବନ୍ଧନଂ [୧୨] ଦ୍ୱୌ ଗବାଶ୍ୱରେ ।
ଗୋମାନ୍ ଗୋମୀ [୧୩] ଗୋକୁଳନ୍ତୁ ଗୋଧନଂ ସ୍ୟାଦ୍ଗବାଂ ବ୍ରଜଃ ॥
[୧୪] ତ୍ରିଷ୍ୱାଶିତଙ୍ଗବୀନନ୍ତଦ୍ଗାବୋ ଯତ୍ରାଶିତାଃ ପୁରା ।

---

୧ । ଅଶନାୟା । ବୁଭୁକ୍ଷା । କ୍ଷୁତ୍ ଏ ତିନିନାମ କ୍ଷୁଧାର ।
୨ । ଗ୍ରାସ । କବଳ ଏ ଦୁଇନାମ ଗ୍ରାସର ।
୩ । ସପୀତି । ତୁଲ୍ୟପାନ ଏ ଦୁଇନାମ ଏକତ୍ରପାନର ।
୪ । ସଗ୍ଧି । ସହଭୋଜନ ଏ ଦୁଇନାମ ସହଭୋଜନର ।
୫ । ଉଦନ୍ୟା । ପିପାସା । ତୃଷା । ତର୍ଷ ଏ ଚାରିନାମ ତୃଷ୍ଣାର ।
୬ । ଜଗ୍ଧି । ଭୋଜନ । ଜେମନ । ଲେପ । ଆହାର । ନିଘସ । ନ୍ୟାଦ ଏ ସାତନାମ ଭୋଜନର ।
୭ । ସୌହିତ୍ୟ । ତର୍ପଣ । ତୃପ୍ତି ଏ ତିନିନାମ ତୃପ୍ତିର ।
୮ । ଫେଲା । ଭୁକ୍ତସମୁଜ୍ଝିତ ଏ ଦୁଇନାମ ଉଚ୍ଛିଷ୍ଟ ବିଶେଷର ।
୯ । କାମ । ପ୍ରକାମ । ପର୍ଯ୍ୟାପ୍ତ । ନିକାମ । ଇଷ୍ଟ । ଯଥେପ୍ସିତ ଏ ଛଅନାମ ପ୍ରଚୁରର ।
୧୦ । ଗୋପ । ଗୋପାଳ । ଗୋସଙ୍ଖ୍ୟ । ଗୋଦୁହ୍ । ଆଭୀର । ବଲ୍ଲବ ଏ ଛଅନାମ ଗଉଡ଼ର ।
୧୧ । ଗୋ ମହିଷ୍ୟାଦି ଅନ [illegible] ପାଦବନ୍ଧନ କହି ।
୧୨ । ଗବାଶ୍ୱର । ଗୋମାନ୍ । ଗୋମୀନ୍ ଏ ତିନିନାମ ଗୋରୁସ୍ୱାମୀର ।
୧୩ । ଗୋକୁଳ । ଗୋଧନ ଏ [illegible] ଗୋସମୂହ ସ୍ଥାନର ।
୧୪ । ପୂର୍ବେ ଯେଉଁ ସ୍ଥାନରେ [illegible] ମାନଙ୍କର ତୃପ୍ତି ହୁଏ ତାକୁ ଅଚିତଗବୀନ କହି ।

[୧] ଉକ୍ଷାଭଦ୍ରୋ ବଲୀବର୍ଦ୍ଦ ଋଷଭୋ ବୃଷଭୋ ବୃଷଃ ।
　　ଅନଡ୍ୱାନ୍ ସୌରଭେୟୋ ଗୌ [୨] ରୁକ୍ଷ୍ଣାଂ ସଂହତିରୌକ୍ଷକଂ
[୩] ଗବ୍ୟା ଗୋତ୍ରା ଗବାଂ [୪-୫] ବତ୍ସ ଧେନ୍ୱୋର୍ବାତ୍ସକ ଧୈନୁକେ
[୬] ବୃଷୋ ମହାନ୍ମହୋକ୍ଷଃ ସ୍ୟା [୭] ଦ୍ଵୃଦ୍ଧୋକ୍ଷସ୍ତୁ ଜରଦ୍ଗବଃ ।
[୮] ଉତ୍ପନ୍ନ ଉକ୍ଷା ଜାତୋକ୍ଷଃ [୯] ସଦ୍ୟୋଜାତସ୍ତୁ ତର୍ଣ୍ଣକଃ ।
[୧୦] ଶକୃତ୍କରିସ୍ତୁ ବତ୍ସଃ ସ୍ୟା [୧୧] ଦ୍ଦମ୍ୟ ବତ୍ସତରୌ ସମୌ ।
[୧୨] ଆର୍ଷଭ୍ୟଃ ଷଣ୍ଡତା ଯୋଗ୍ୟଃ [୧୩] ଷଣ୍ଡୋ ଗୋପତି ରିଟ୍ଚରଃ
[୧୪] ସ୍କନ୍ଧପ୍ରଦେଶସ୍ତୁ ବହଃ [୧୫] ସାସ୍ନା ତୁ ଗଲକମ୍ବଲଃ ।
[୧୬] ସ୍ୟାନ୍ନସ୍ତିତସ୍ତୁ ନସ୍ୟୋତଃ [୧୭] ପ୍ରଷ୍ଠବାଡ୍ଯୁଗପାର୍ଶ୍ୱଗଃ ।

---

୧ । ଉକ୍ଷନ୍ । ଭଦ୍ର । ବଲୀବର୍ଦ୍ଦ । ଋଷଭ । ବୃଷଭ । ବୃଷ । ଅନଡୁହ୍ । ସୌରଭେୟ । ଗୋ ଏ ନବନାମ ଅଣ୍ଡିରଗୋରୁର ।

୨ । ବୃଷସମୂହକୁ ଔକ୍ଷକ କହି ।

୩ । ଗବ୍ୟା । ଗୋତ୍ରା ଏ ଦୁଇନାମ ଗୋସମୂହର ।

୪ । ବତ୍ସସମୂହକୁ ବାତ୍ସକ କହି ।　　　୫ । ଧେନୁସମୂହକୁ ଧୈନୁକ କହି ।

୬ । ବଡ଼ବୃଷକୁ ମହୋକ୍ଷ କହି ।

୭ । ଜରଦ୍ଗବ । ବୃଦ୍ଧୋକ୍ଷ ଏ ଦୁଇନାମ ବୃଦ୍ଧବୃଷର ।

୮ । ଅଳ୍ପବୟସ ଜାତ ବୃଷକୁ ଜାତୋକ୍ଷ କହି ।

୯ । ସଦ୍ୟୋଜାତ ବତ୍ସକୁ ତର୍ଣ୍ଣକ କହି ।

୧୦ । ଶକୃତ୍କରି । ବତ୍ସ ଏ ଦୁଇନାମ ବତ୍ସମାନର ।

୧୧ । ଦମ୍ୟ । ବତ୍ସତର ଏ ଦୁଇନାମ ଦମନଯୋଗ୍ୟ ବତ୍ସର ।

୧୨ । ଦାମୁଡ଼ି ହେବା ଯୋଗ୍ୟ ଗୋରୁକୁ ଆର୍ଷଭ୍ୟ କହି ।

୧୩ । ଷଣ୍ଡ । ଗୋପତି ଇଟ୍ଚର ଏ ତିନିନାମ ବୃଷଭର ।

୧୪ । ଗୋରୁର ସ୍କନ୍ଧ ପ୍ରଦେଶକୁ ବହ କହି ।

୧୫ । ସାସ୍ନା । ଗଲକମ୍ବଳ ଏ ଦୁଇନାମ ଗୋରୁର ଗଳକମ୍ବଳର ।

୧୬ । ନସ୍ତିତ । ନସ୍ୟୋତ ଏ ଦୁଇନାମ ନାକଫୋଡ଼ା ଗୋରୁର ।

୧୭ । ପ୍ରଷ୍ଠବାହ । ଯୁଗପାର୍ଶ୍ୱଗ ଏ ଦୁଇନାମ ଶିକ୍ଷା ନିମିତ୍ତ ଯୁଆଳିପାଶେ ବନ୍ଧାହେଲାବେଳର

[୧] ଯୁଗାଦୀନାଂ ଚ ବୋଢ଼ାରୋ ଯୁଗ୍ୟ [୨] ପ୍ରାସଙ୍ଗ୍ୟ [୩] ଶାକଟାଃ

[୪] ଖନତି ତେନ ତଦ୍ବୋଢ଼ାଽସ୍ୟେଦଂ ହାଳିକ ସୈରିକୌ ।

[୫] ଧୂର୍ବହେ ଧୁର୍ଯ୍ୟ ଧୌରେୟ ଧୁରୀଣାଃ ସଧୁରନ୍ଧରାଃ ।

[୬] ଉଭାବେକଧୁରୀଣୈକଧୁରାବେକଧୁରାବହେ ।

[୭] ସ ତୁ ସର୍ବ୍ବଧୁରୀଣଃ ସ୍ୟାଦ୍ୟୋ ବୈ ସର୍ବ୍ବଧୁରାବହଃ ।

[୮] ମାହେୟୀ ସୌରଭେୟୀ ଗୌରୁସ୍ରା ମାତା ଚ ଶୃଙ୍ଗିଣୀ ।
ଅର୍ଜ୍ଜୁନ୍ୟଘ୍ନ୍ୟା ରୋହିଣୀ ସ୍ୟା [୯] ଦୁତ୍ତମା ଗୋଷୁ ନୈଚିକୀ ।

[୧୦-୧୧] ବର୍ଣ୍ଣାଦି ଭେଦାତ୍ ସଂଜ୍ଞାଃ ସ୍ୟୁଃ ଶବଳୀ ଧବଳାଦୟଃ ।।

[୧୨] ଦ୍ୱିହାୟନୀ ଦ୍ୱିବର୍ଷା ଗୌ [୧୩] ରେକାବ୍ଦା ତ୍ୱେକହାୟନୀ ।

[୧୪] ଚତୁରବ୍ଦା ଚତୁର୍ହାୟଣ୍ୟେବ [୧୫] ତ୍ର୍ୟବ୍ଦା ତ୍ରିହାୟଣୀ ।

---

୧ । ଯୋଚୁଥା ଗୋରୁଙ୍କୁ ଯୁଗ୍ୟ କହି । ୨ । ଦଣ୍ଡରୁଥା ବଳଦକୁ ପ୍ରାସଙ୍ଗ୍ୟ କହି ।

୩ । ଶଗଡ଼ଟଣା ବଳଦକୁ ଶାକଟ କହି ।

୪ । ହାଳିକ । ସୈରିକ ଏ ଦୁଇନାମ ହଳଟଣା ବଳଦର ।

୫ । ଧୂର୍ବହ । ଧୁର୍ଯ୍ୟ । ଧୌରେୟ । ଧୁରୀଣ । ଧୁରନ୍ଧର ଏ ପାଞ୍ଚନାମ ଭାର ବହିବା ତେ-
ଜସ୍ୱୀ ବଳଦର ।

୬ । ଏକଧୁରୀଣ । ଏକଧୁର । ଏକଧୁରାବହ ଏ ତିନିନାମ ଯେ ଏକ ଟଣୁଥା ବଳଦର ।

୭ । ସର୍ବଧୁରୀଣ । ସର୍ବଧୁରାବହ ଏ ଦୁଇନାମ ଚୂଡ଼ାନ୍ତ ଭାରବହା ବଳଦର ।

୮ । ମାହେୟୀ । ସୌରଭେୟୀ । ଗୋ । ଉସ୍ରା । ମାତୃ । ଶୃଙ୍ଗିଣୀ । ଅର୍ଜ୍ଜୁନୀ । ଅଘ୍ନ୍ୟା ।
ରୋହିଣୀ ଏ ନବନାମ ଗାଈର ।

୯ । ସୁଲକ୍ଷଣାକ୍ରାନ୍ତ ଗାଈକି ନୈଚିକୀ କହି ।

୧୦ । ଶବଳବର୍ଣ୍ଣ ଗାଈକି ଶବଳୀ କହି ।

୧୧ । ଶୁକ୍ଳବର୍ଣ୍ଣ ଗାଈକି ଧବଳୀ କହି ।

୧୨ । ଦ୍ୱିହାୟନୀ । ଦ୍ୱିବର୍ଷା ଏ ଦୁଇନାମ ଦୁଇବର୍ଷୀୟା ଗାଈର ।

୧୩ । ଏକାବ୍ଦା । ଏକହାୟନୀ ଏ ଦୁଇନାମ ଏକବର୍ଷ ବୟସ ଗୋରୁର ।

୧୪ । ଚତୁରବ୍ଦା । ଚତୁର୍ହାୟଣୀ ଏ ଦୁଇନାମ ଚାରିବର୍ଷ ବୟସ ଗୋରୁର ।

୧୫ । ତ୍ର୍ୟବ୍ଦା । ତ୍ରିହାୟଣୀ ଏ ଦୁଇନାମ ତିନିବର୍ଷ ବୟସ ଗୋରୁର ।

[୧] ବଶାବନ୍ଧ୍ୟା [୨] ବତୋକା ତୁ ସ୍ରବଦ୍ଗର୍ଭା [୩] ଽଥ ସନ୍ଧିନୀ ।
ଆକ୍ରାନ୍ତା ବୃଷଭେଣ [୪] ଽଥ ବେହଦ୍ଗର୍ଭୋପଘାତିନୀ ॥
[୫] କାଲ୍ୟୋପସର୍ଯ୍ୟା ପ୍ରଜନେ [୬] ପ୍ରଷ୍ଠୌହୀ ବାଲଗର୍ଭିଣୀ ।
[୭] ସ୍ୟାଦଚଣ୍ଡୀ ତୁ ସୁକରା [୮] ବହୁସୂତିଃ ପରେଷ୍ଟୁକା ॥
[୯] ଚିରସୂତା ବଷ୍କୟଣୀ [୧୦] ଧେନୁଃ ସ୍ୟାନ୍ନବସୂତିକା ।
[୧୧] ସୁବ୍ରତା ସୁଖସନ୍ଦୋହ୍ୟା [୧୨] ପୀନୋଧ୍ନୀ ପୀବରସ୍ତନୀ ॥
[୧୩] ଦ୍ରୋଣକ୍ଷୀରା ଦ୍ରୋଣଦୁଘା [୧୪] ଧେନୁଷ୍ୟା ବନ୍ଧକେ ସ୍ଥିତା ।
[୧୫] ସମାଂସମୀନା ସା ଯୈବ ପ୍ରତିବର୍ଷଂ ପ୍ରସୂୟତେ ॥
[୧୬] ଊଧସ୍ତୁ କ୍ଲୀବମାପୀନଂ [୧୭] ସମୌ ଶିବକ କୀଲକୌ ।

---

୧ । ବଶା । ବନ୍ଧ୍ୟା ଏ ଦୁଇନାମ ବନ୍ଧ୍ୟା ଗାଈର ।
୨ । ଅବତୋକା । ସ୍ରବଦ୍ଗର୍ଭା ଏ ଦୁଇନାମ ଦୈବାତ୍ ଗର୍ଭସ୍ରାବଯୁକ୍ତ ଗାଈର ।
୩ । ବୃଷଭକର୍ତ୍ତୃକ ଆକ୍ରାନ୍ତା ଋତୁମତୀ ଗାଈକୁ ସନ୍ଧିନୀ କହନ୍ତି ।
୪ । ବେହଦ୍ଗର୍ଭା । ଉପଘାତିନୀ ଏ ଦୁଇନାମ ଗର୍ଭଘାତିନୀ ଗାଈର ।
୫ । କାଲ୍ୟା । ଉପସର୍ଯ୍ୟା ଏ ଦୁଇନାମ ପ୍ରଥମଗର୍ଭବତୀ ଗାଈର ।
୬ । ପ୍ରଷ୍ଠୌହୀ । ବାଲଗର୍ଭିଣୀ ଏ ଦୁଇନାମ ଅଳ୍ପବୟସରେ ପ୍ରଥମଗର୍ଭିଣୀ ଗାଈର ।
୭ । ଅଚଣ୍ଡୀ । ସୁକରା ଏ ଦୁଇନାମ ବନ୍ଧା ହୋଇ ଦୁହାଁଯିବା ଗାଈର ।
୮ । ବହୁସୂତି । ପରେଷ୍ଟୁକା ଏ ଦୁଇନାମ ବହୁପ୍ରସବ ଗାଈର ।
୯ । ଚିରସୂତା । ବଷ୍କୟଣୀ ଏ ଦୁଇନାମ ଚିରପ୍ରସୂତା ଗାଈର ।
୧୦ । ଧେନୁ । ନବସୂତିକା ଏ ଦୁଇନାମ ନବପ୍ରସୂତା ଗାଈର ।
୧୧ । ସୁବ୍ରତା । ସୁଖସନ୍ଦୋହ୍ୟା ଏ ଦୁଇନାମ ସୁଖରେ ଦୁହାଁଯାଉଥିବା ଗାଈର ।
୧୨ । ପୀନୋଧ୍ନୀ । ପୀବରସ୍ତନୀ ଏ ଦୁଇନାମ ସ୍ଥୂଳସ୍ତନଯୁକ୍ତ ଗାଈର ।
୧୩ । ଦ୍ରୋଣକ୍ଷୀରା । ଦ୍ରୋଣଦୁଘା ଏ ଦୁଇନାମ ଦ୍ରୋଣପରିମିତ ଦୁଗ୍ଧଦାୟିନୀ ଗାଈର ।
୧୪ । ବନ୍ଧକେ ସ୍ଥିତା ଗାଈକୁ ଧେନୁଷ୍ୟା କହନ୍ତି ।
୧୫ । ବର୍ଷବିଆଣୀ ଗାଈକୁ ସମାଂସମୀନା କହନ୍ତି ।
୧୬ । ଊଧସ । ଆପୀନ ଏ ଦୁଇନାମ ଗାଈସ୍ତନର ।
୧୭ । ଶିବକ । କୀଲକ ଏ ଦୁଇନାମ ଖୁଣ୍ଟର ।

[୧] ନ ପୁଂସି ଦାମ ସନ୍ଦାନଂ [୨] ପଶୁରଜ୍ଜୁସ୍ତୁ ଦାମନୀ ।
[୩] ବୈଶାଖ ମନ୍ଥ ମନ୍ଥାନ ମନ୍ଥାନୋ ମନ୍ଥଦଣ୍ଡକେ ।
[୪] କୁଠରୋ ଦଣ୍ଡବିଷ୍କମ୍ଭେ [୫] ମନ୍ଥନୀ ଗର୍ଗରୀ ସମେ ।
[୬] ଉଷ୍ଟ୍ରେ କ୍ରମେଲକ ମୟ ମହାଙ୍ଗାଃ [୭] କରଭଃ ଶିଶୁଃ ।
[୮] କରଭାଃ ସ୍ୟୁଃ ଶୃଙ୍ଖଳକା ଦାରବୈଃ ପାଦବନ୍ଧନୈଃ ।
[୯] ଅଜା ଛାଗୀ [୧୦] ସ୍ତୁଭଃ ଛାଗ ବସ୍ତଚ୍ଛଗଲକା ଅଜେ ।
[୧୧] ମେଢ୍ରୋରଭ୍ରୋରଣୋର୍ଣ୍ଣାୟୁ ମେଷ ବୃଷ୍ଣୟ ଏଡ଼କାଃ ।
[୧୨-୧୩-୧୪] ଉଷ୍ଟ୍ରୋରଭ୍ରାଜବୃନ୍ଦେ ସ୍ୟାଦୌଷ୍ଟ୍ରକୌରଭ୍ରକାଜକ
[୧୫] ଚକ୍ରୀବନ୍ତସ୍ତୁ ବାଲେୟ ରାସଭ ଗର୍ଦ୍ଦଭାଃ ଖରାଃ ।

---

୧ । ଦାମନ୍ । ସନ୍ଦାନ ୨ ଦୁଇନାମ ପଘଉଡ଼ିର ।
୨ । ପଶୁରଜ୍ଜୁ । ଦାମନୀ ୨ ଦୁଇନାମ ପଶୁରଜ୍ଜୁର ।
୩ । ବୈଶାଖ । ମନ୍ଥ । ମନ୍ଥାନ । ମନ୍ଥିନ୍ । ମନ୍ଥଦଣ୍ଡକ ୫ ପାଞ୍ଚନାମ ମନ୍ଥନଦଣ୍ଡର ।
( ଖୁଅ ) ।
୪ । କୁଠର । ଦଣ୍ଡବିଷ୍କମ୍ଭ ୨ ଦୁଇନାମ ମନ୍ଥନଦଣ୍ଡ ପଘଉଡ଼ର ।
୫ । ମନ୍ଥନୀ । ଗର୍ଗରୀ ୨ ଦୁଇନାମ ଦହିମନ୍ଥା ହାଣ୍ଡିର ।
୬ ଉଷ୍ଟ୍ର । କ୍ରମେଲକ । ମୟ । ମହାଙ୍ଗ ୪ ଚାରିନାମ ଓଟର
୭ । କରଭ । ଶିଶୁ ୨ ଦୁଇନାମ ଓଟଛୁଆର ।
୮ । କାଠଖଣ୍ଡରେ ପାଦବନ୍ଧା ରହିଥିବା ଓଟଛୁଆଙ୍କ ନାମ ଶୃଙ୍ଖଳକ ।
୯ । ଅଜା । ଛାଗୀ ୨ ଦୁଇନାମ ମାଈଛେଳିର ।
୧୦ । ସ୍ତୁଭ । ଛାଗ । ଛଗଳକ । ଅଜ ୪ ଚାରିନାମ ଛେଳିର ।
୧୧ । ମେଢ୍ର । ଉରଭ୍ର । ଉରଣ । ଉର୍ଣ୍ଣାୟୁ । ମେଷ । ବୃଷ୍ଣି । ଏଡ଼କ ୭ ସାତନାମ ଘାରଡ଼ ମେଣ୍ଢାର ।
୧୨ । ଓଟସମୂହକୁ ଔଷ୍ଟ୍ରକ କହି ।
୧୩ । ମେଷସମୂହକୁ ଔରଭ୍ରକ କହି ।
୧୪ । ଛାଗସମୂହକୁ ଅଜକ କହି ।
୧୫ । ଚକ୍ରୀବତ୍ । ବାଲେୟ । ରାସଭ । ଗର୍ଦ୍ଦଭ । ଖର ୫ ପାଞ୍ଚନାମ ଗଧର ।

[୧] ବୈଦେହକଃ ସାର୍ଥବାହୋ ନୈଗମୋ ବାଣିଜୋ ବଣିକ୍ ।
ପଣ୍ୟାଜୀବୋ ହ୍ୟାପଣିକଃ କ୍ରୟବିକ୍ରୟିକଶ୍ଚ ସଃ ।
[୨] ବିକ୍ରେତା ସ୍ୟାଦ୍ବିକ୍ରୟିକଃ [୩] କ୍ରାୟିକ କ୍ରୟିକୌ ସମୌ ॥
[୪] ବାଣିଜ୍ୟଂ ତୁ ବଣିଜ୍ୟା ସ୍ୟା [୫] ନ୍ମୂଲ୍ୟଂ ବସ୍ନୋପ୍ୟବକ୍ରୟଃ ।
[୬] ନୀବୀ ପରିପଣଂ ମୂଳଧନଂ [୭] ଲାଭୋଽଧିକଂ ଫଳଂ ॥
[୮] ପରିଦାନଂ ପରୀବର୍ତ୍ତୋ ନୈମେୟ ନିମୟାବପି ।
[୯] ପୁମାନୁପନିଧିର୍ନ୍ୟାସଃ [୧୦] ପ୍ରତିଦାନଂ ତଦର୍ପଣଂ ॥
[୧୧] କ୍ରୟେ ପ୍ରସାରିତଂ କ୍ରୟ୍ୟଂ [୧୨] କ୍ରେୟଂ କ୍ରେତବ୍ୟମାତ୍ରକେ ।
[୧୩] ବିକ୍ରେୟଂ ପଣିତବ୍ୟଂ ଚ ପଣ୍ୟଂ କ୍ରୟ୍ୟାଦୟସ୍ତ୍ରିଷୁ ॥
[୧୪] କ୍ଲୀବେ ସତ୍ୟାପନଂ ସତ୍ୟଂକାରଃ ସତ୍ୟାକୃତିଃ ସ୍ତ୍ରିୟାଂ ।

---

୧ । ବୈଦେହକ । ସାର୍ଥବାହ । ନୈଗମ । ବାଣିଜ । ବଣିଜ । ପଣ୍ୟାଜୀବ । ଆପଣିକ ।
କ୍ରୟବିକ୍ରୟିକ ଏ ଅଠନାମ ଗନ୍ଧବଣିକର ।
୨ । ବିକ୍ରେତୃ । ବିକ୍ରୟିକ ଏ ଦୁଇନାମ ବିକ୍ରୟକର୍ତ୍ତାର ।
୩ । କ୍ରାୟିକ । କ୍ରୟିକ ଏ ଦୁଇନାମ କ୍ରେତାର ।
୪ । ବାଣିଜ୍ୟ । ବାଣିଜ୍ୟା ଏ ଦୁଇନାମ ବାଣିଜ୍ୟବ୍ୟବସାୟର ।
୫ । ମୂଲ୍ୟ । ବସ୍ନ । ଅବକ୍ରୟ ଏ ତିନିନାମ ମୂଲ୍ୟର ।
୬ । ନୀବୀ । ପରିପଣ । ମୂଳଧନ ଏ ତିନିନାମ ମୂଳଧନ ଅର୍ଥାତ୍ ପୁଞ୍ଜିର ।
୭ । ଲାଭ । ଫଳ ଏ ଦୁଇନାମ ମୂଳଧନଠାରୁ ଅଧିକ ଲାଭର ।
୮ । ପରିଦାନ । ପରୀବର୍ତ୍ତ । ନୈମେୟ । ନିମୟ ଏ ଚାରିନାମ ବଦଳର ।
୯ । ଉପନିଧି । ନ୍ୟାସ ଏ ଦୁଇନାମ ଗଚ୍ଛିତଧନର ।
୧୦ । ଗଚ୍ଛିତଧନ ସମର୍ପଣର ନାମ ପ୍ରତିଦାନ ।
୧୧ । ବିକ୍ରୟ ନିମିତ୍ତ ଦ୍ରବ୍ୟ ଦେଖାଇବାକୁ କ୍ରୟ୍ୟ କହି ।
୧୨ । କ୍ରେୟ । କ୍ରେତବ୍ୟ ଏ ଦୁଇନାମ କ୍ରୟଯୋଗ୍ୟ ବସ୍ତୁର ।
୧୩ । ବିକ୍ରେୟ । ପଣିତବ୍ୟ । ପଣ୍ୟ ଏ ତିନିନାମ ବିକ୍ରୟଯୋଗ୍ୟ ବସ୍ତୁର ।
୧୪ । ସତ୍ୟାପନ । ସତ୍ୟଙ୍କାର । ସତ୍ୟାକୃତି ଏ ତିନିନାମ କ୍ରୟାର୍ଥ ବଇଣାର ।

[୧] ବିପଣୋ ବଣିଜ୍ୟଃ [୨] ସଂଖ୍ୟାଃ ସଂଖ୍ୟେୟେ ହ୍ୟାଦଶ ତ୍ରିଷୁ ।
[୩] ବିଂଶତ୍ୟାଦ୍ୟାଃ ସଦୈକତ୍ୱେ ସର୍ବାଃ ସଂଖ୍ୟେୟସଂଖ୍ୟୟୋଃ ॥
ସଂଖ୍ୟାର୍ଥେ ଦ୍ୱିବହୁତ୍ୱେ ସ୍ତଃ ତାସୁ ଚାନବତେଃ ସ୍ତ୍ରିୟଃ ।
ପଂକ୍ତେଃ ଶତସହସ୍ରାଦି କ୍ରମାଦ୍ଦଶଗୁଣୋତ୍ତରଂ ॥
[୪] ଯୌତବଂ ଦ୍ରୁବୟଂ ପାୟ୍ୟମିତି ମାନାର୍ଥକଂ ତ୍ରୟଂ ।
[୫] ମାନତୁଲାଙ୍ଗୁଳିପ୍ରସ୍ଥୈ [୬] ର୍ଗୁଞ୍ଜାଃ ପଞ୍ଚାଦ୍ୟ ମାଷକଃ ॥

---

୧ । ବେପାର । ବଣିଜ୍ୟ ଏ ଦୁଇ ନାମ ବଣିଜ୍ୟ କର୍ମର ।

୨ । ଦଶସଂଖ୍ୟାକୁ ଦଶତ୍ କହି ।

୩ । କୋଡିଏ ସଂଖ୍ୟାକୁ ବିଂଶତି । ତିରିଶସଂଖ୍ୟାକୁ ତ୍ରିଂଶତ୍ । ଚାଳିଶସଂଖ୍ୟାକୁ ଚତ୍ୱାରିଂଶତ୍ । ପଚାଶର ନାମ ପଞ୍ଚାଶତ୍ । ଷାଠିଏ ସଂଖ୍ୟାକୁ ଷଷ୍ଟି । ସତୁରିସଂଖ୍ୟାକୁ ସପ୍ତତି । ଅଶୀ ସଂଖ୍ୟାକୁ ଅଶୀତି । ନବେ ସଂଖ୍ୟାକୁ ନବତି । ଏକଶ ସଂଖ୍ୟାର ନାମ ଶତ । ଦଶଶତ ସଂଖ୍ୟାର ନାମ ସହସ୍ର । ଦଶସହସ୍ର ସଂଖ୍ୟାର ନାମ ଅୟୁତ । ଦଶଅୟୁତ ସଂଖ୍ୟାର ନାମ ଲକ୍ଷ । ଦଶଲକ୍ଷ ସଂଖ୍ୟାର ନାମ ନିୟୁତ । ଦଶନିୟୁତ ନାମ କୋଟି । ଦଶକୋଟିସଂଖ୍ୟାର ନାମ ଅର୍ବୁଦ । ଦଶଅର୍ବୁଦ ସଂଖ୍ୟାର ନାମ ବୃନ୍ଦ । ଦଶବୃନ୍ଦ ସଂଖ୍ୟାର ନାମ ଖର୍ବ । ଦଶଖର୍ବ ସଂଖ୍ୟାର ନାମ ନିଖର୍ବ । ଦଶନିଖର୍ବ ସଂଖ୍ୟାର ନାମ ଶଙ୍ଖ । ଦଶଶଙ୍ଖ ସଂଖ୍ୟାର ନାମ ପଦ୍ମ । ଦଶପଦ୍ମ ସଂଖ୍ୟାର ନାମ ସାଗର । ଦଶସାଗର ସଂଖ୍ୟାର ନାମ ଅନ୍ତ୍ୟ । ଦଶଅନ୍ତ୍ୟ ସଂଖ୍ୟାର ନାମ ମଧ୍ୟ । ଦଶମଧ୍ୟ ସଂଖ୍ୟାର ନାମ ପରାର୍ଦ୍ଧ କହି ।

୪ । ଯୌତବ । ଦ୍ରୁବୟ । ପାଯ୍ୟ ଏ ତିନିନାମ ମାନକ୍ରିୟା ପରିମାଣର ।

୫ । ତୁଳାପରିମାଣ, ଅଙ୍ଗୁଳିପରିମାଣ ଏବଂ ପ୍ରସ୍ଥାଦି ପରିମାଣର ନାମକୁ ମାନ କହି ।

୬ । ପାଞ୍ଚଗୁଞ୍ଜାର ନାମକୁ ଆଦ୍ୟମାଷକ କହି ।

[୧] ତେ ଷୋଡଶାକ୍ଷଃ କର୍ଷୋଽସ୍ତ୍ରୀ [୨] ପଳଂ କର୍ଷଚତୁଷ୍ଟୟଂ ।
[୩] ସୁବର୍ଣ୍ଣ ବିସ୍ତୌ ହେମ୍ନୋଽକ୍ଷେ [୪] କୁରୁବିସ୍ତସ୍ତୁ ତତ୍ପଳେ ।
[୫] ତୁଳାସ୍ତ୍ରିୟାଂ ପଳଶତଂ [୬] ଭାରଃ ସ୍ୟାଦ୍ୱିଂଶତିସ୍ତୁଳାଃ ।
[୭] ଆଚିତଂ ଦଶଭାରାଃ ସ୍ୟୁଃ [୮] ଶାକଟୋ ଭାର ଆଚିତଃ ।
[୯] କାର୍ଷାପଣଃ କାର୍ଷିକଃ ସ୍ୟାତ୍ [୧୦] କାର୍ଷିକେ ତାମ୍ରିକେ ପଣଃ
[୧୧] ଅସ୍ତ୍ରିୟାମାଢକଦ୍ରୋଣୌ ଖାରୀ ବାହୋ ନିକୁଞ୍ଚକଃ ।
କୁଡ଼ବଃ ପ୍ରସ୍ଥ ଇତ୍ୟାଦ୍ୟାଃ ପରିମାଣାର୍ଥକାଃ ପୃଥକ୍ ।
[୧୨] ପାଦସ୍ତୁରୀୟୋ ଭାଗଃ ସ୍ୟା [୧୩] ଦଂଶଭାଗୌ ତୁ ବଣ୍ଟକଃ ।
[୧୪] ଦ୍ରବ୍ୟଂ ବିତ୍ତଂ ସ୍ୱାପତେୟଂ ରିକ୍ଥମୃକ୍ଥଂ ଧନଂ ବସୁ ।
ହିରଣ୍ୟଂ ଦ୍ରବିଣଂ ଦ୍ୟୁମ୍ନମର୍ଥରୈବିଭବା ଅପି ।

---

୧ । ଅକ୍ଷ । କର୍ଷ ଏ ଦୁଇନାମ ଷୋଳମଷା ପରିମାଣର ।
୨ । ଚାରିତୋଳାକୁ ପଳ କହି ।
୩ । ସୁବର୍ଣ୍ଣ । ବିସ୍ତ ଏ ଦୁଇନାମ ଅଶୀରତି ସୁନାର ।
୪ । ଚାରିତୋଳା ସୁନାକୁ କୁରୁବିସ୍ତ କହି ।
୫ । ଚାରିଶତ ତୋଳା ପରିମାଣକୁ ତୁଳା କହି ।
୬ । କୋଡିଏ ତୋଳା ପରିମାଣକୁ ଭାର କହି ।
୭ । ଦଶଭାର ପରିମାଣକୁ ଆଚିତ କହି ।
୮ । ଏକଗାଡି ବୋଝିଇକୁ ଆଚିତ କହି ।
୯ । କାର୍ଷାପଣ । କାର୍ଷିକ ଏ ଦୁଇନାମ ଷୋଳପଣର ।
୧୦ । ଏକତୋଳା ତମ୍ବାକୁ ପଣ କହି ।
୧୧ । ଆଢକ । ଦ୍ରୋଣ । ଖାରି । ବାହ । ନିକୁଞ୍ଚକ । କୁଡବ । ପ୍ରସ୍ଥ ଏ ସାତନାମ ଭିନ୍ନ ଭିନ୍ନ ପରିମାଣର ।
୧୨ । ଚାରିଭାଗର ଏକଭାଗକୁ ପାଦ କହି ।
୧୩ । ଅଂଶ । ଭାଗ । ବଣ୍ଟକ ଏ ତିନିନାମ ଭାଗର ।
୧୪ । ଦ୍ରବ୍ୟ । ବିତ୍ତ । ସ୍ୱାପତେୟ । ରିକ୍ଥ । ଋକ୍ଥ । ଧନ । ବସୁ । ହିରଣ୍ୟ । ଦ୍ରବିଣ । ଦ୍ୟୁମ୍ନ । ଅର୍ଥ । ରୈ । ବିଭବ ଏ ତେରନାମ ଧନର ।

[୧] ସ୍ୟାତ୍‌କୋଷଶ୍ଚ ହିରଣ୍ୟଂ ଚ ହେମରୂପ୍ୟେ କୃତାକୃତେ ।
[୨] ତାମ୍ରଂ ଯଦନ୍ୟତ୍‌ କୁପ୍ୟଂ [୩] ରୂପ୍ୟଂ ତଦ୍ଦ୍ୱୟମାହତଂ ।
[୪] ଗାରୁତ୍ମତଂ ମରକତମଶ୍ମଗର୍ଭୋ ହରିନ୍ମଣିଃ ।
[୫] ଶୋଣରତ୍ନଂ ଲୋହିତକଃ ପଦ୍ମରାଗୋ [୬] ଽଥ ମୌକ୍ତିକଂ ।
ମୁକ୍ତା [୭] ଽଥ ବିଦ୍ରୁମଃ ପୁଂସି ପ୍ରବାଳଂ ପୁଂ-ନପୁଂସକଂ ।
[୮] ରତ୍ନଂ ମଣି ର୍ଦ୍ୱୟୋରଶ୍ମଜାତୌ ମୁକ୍ତାଦିକେଽପି ଚ ।
[୯] ସ୍ୱର୍ଣ୍ଣଂ ସୁବର୍ଣ୍ଣଂ କନକଂ ହିରଣ୍ୟଂ ହେମ ହାଟକଂ ।
ତପନୀୟଂ ଶାତକୁମ୍ଭଂ ଗାଙ୍ଗେୟଂ ଭର୍ମ୍ମ କର୍ବୁରଂ ।
ଚାମୀକରଂ ଜାତରୂପଂ ମହାରଜତ କାଞ୍ଚନେ ।
ରୁକ୍ମଂ କାର୍ତ୍ତସ୍ୱରଂ ଜାମ୍ବୁନଦମଷ୍ଟାପଦୋଽସ୍ତ୍ରିୟାଂ ।
[୧୦] ଅଲଙ୍କାର ସୁବର୍ଣ୍ଣଂ ଯଚ୍ଛୃଙ୍ଗୀକନକମିତ୍ୟଦଃ ।
[୧୧] ଦୁର୍ବର୍ଣ୍ଣଂ ରଜତଂ ରୂପ୍ୟଂ ଖର୍ଜ୍ଜୂରଂ ଶ୍ୱେତମିତ୍ୟପି ।

---

୧ । କୋଷ । ହିରଣ୍ୟ ଏ ଦୁଇନାମ ପିଣ୍ଡୀକୃତ ସୁନା ରୂପାର ।
୨ । ସୁନା ରୂପା ଭିନ୍ନ ଟେଙ୍କସବୁ କୁପ୍ୟ କହି ।
୩ । ଅଙ୍କିତ ସୁନାରୂପାକୁ ରୂପ୍ୟ କହି ।
୪ । ଗାରୁତ୍ମତ । ଅଶ୍ମଗର୍ଭ । ହରିନ୍ମଣି ଏ ତିନିନାମ ମରକତମଣିର ।
୫ । ଶୋଣରତ୍ନ । ଲୋହିତକ । ପଦ୍ମରାଗ ଏ ତିନିନାମ ପଦ୍ମରାଗମଣିର ।
୬ । ମୌକ୍ତିକ । ମୁକ୍ତା ଏ ଦୁଇନାମ ମୁକ୍ତାର ।
୭ । ବିଦ୍ରୁମ । ପ୍ରବାଳ ଏ ଦୁଇନାମ ପୋହଳାର ।
୮ । ରତ୍ନ । ମଣି ଏ ଦୁଇନାମ ସାମାନ୍ୟ ମଣିର ।
୯ । ସ୍ୱର୍ଣ୍ଣ । ସୁବର୍ଣ୍ଣ । କନକ । ହିରଣ୍ୟ । ହେମନ୍‌ । ହାଟକ । ତପନୀୟ । ଶାତକୁମ୍ଭ । ଗାଙ୍ଗେୟ । ଭର୍ମ୍ମନ୍‌ । କର୍ବୁର । ଚାମୀକର । ଜାତରୂପ । ମହାରଜତ । କାଞ୍ଚନ । ରୁକ୍ମ । କାର୍ତ୍ତସ୍ୱର । ଜାମ୍ବୁନଦ । ଅଷ୍ଟାପଦ ଏ ଉଣେଇଶ ନାମ ସୁବର୍ଣ୍ଣର ।
୧୦ । ଅଳଙ୍କାର ନିମନ୍ତେ ଦେଇଥିବା ସୁନାକୁ ଶୃଙ୍ଗୀ କନକ କହି ।
୧୧ । ଦୁର୍ବର୍ଣ୍ଣ । ରଜତ । ରୂପ୍ୟ । ଖର୍ଜ୍ଜୂର । ଶ୍ୱେତ ଏ ପାଞ୍ଚନାମ ରୂପାର ।

[୧] ରୀତିଃ ସ୍ତ୍ରିୟାମାରକୂଟୋ ନ ସ୍ତ୍ରିୟାଂ [୨] ମଥ ତାମ୍ରକଂ ।
ଶୁଲ୍ବଂ ମ୍ଲେଚ୍ଛମୁଖଂ ଦ୍ୱ୍ୟଷ୍ଟଂ ବରିଷ୍ଠୋଦୁମ୍ବରାଣି ଚ ।
[୩] ଲୋହୋ ଽସ୍ତ୍ରୀ ଶସ୍ତ୍ରକଂ ତୀକ୍ଷ୍ଣଂ ପିଣ୍ଡଂ କାଳାୟସାୟସୀ
ଅଶ୍ମସାରେ [୪] ଽଥ ମଣ୍ଡୂରଂ ସିଂହାଣମପି ତନ୍ମଳେ ।
[୫] ସର୍ବଂ ସ୍ୟାତ୍ତୈଜସଂ ଲୌହଂ [୬] ବିକାରସ୍ତ୍ୱୟସଃ କୁଶୀ ।
[୭] କ୍ଷାରଃ କାଚେ [୮] ଽଥ ଚପଲୋ ରସଃ ସୂତଶ୍ଚ ପାରଦେ ।
[୯] ଗବଳଂ ମାହିଷଂ ଶୃଙ୍ଗ [୧୦] ମଭ୍ରକଂ ଗିରିଜାମଳେ ।
[୧୧] ସ୍ରୋତୋଞ୍ଜନଂ ତୁ ସୌବୀରଂ କାପୋତାଞ୍ଜନ ଯାମୁନେ ।
[୧୨] ତୁତ୍ଥାଞ୍ଜନଂ ଶିଖିଗ୍ରୀବଂ ବିତୁନ୍ନକ ମୟୂରକେ ।

---

୧ । ରୀତି । ଆରକୂଟ ଏ ଦୁଇନାମ ପିତ୍ତଳର ।

୨ । ତାମ୍ରକ । ଶୁଲ୍ବ । ମ୍ଲେଚ୍ଛମୁଖ । ଦ୍ୱ୍ୟଷ୍ଟ । ବରିଷ୍ଠ । ଉଦୁମ୍ବର ଏ ଛନାମ ତମ୍ବାର ।

୩ । ଲୌହ । ଶସ୍ତ୍ରକ । ତୀକ୍ଷ୍ଣ । ପିଣ୍ଡ । କାଳାୟସ୍ । ଅୟସ୍ । ଅଶ୍ମସାର ଏ ସାତନାମ ଲୋହାର ।

୪ । ମଣ୍ଡୂର । ସିଂହାଣ ଏ ଦୁଇନାମ ଲୁହାମଳର ।

୫ । ସମସ୍ତ ଧାତୁଦ୍ରବ୍ୟକୁ ଲୌହ କହି ।

୬ । ଲୌହବିକାରକୁ କୁଶୀ କହି ।

୭ । କ୍ଷାର । କାଚ ଏ ଦୁଇନାମ କାଚର ।

୮ । ଚପଳ । ରସ । ସୂତ । ପାରଦ ଏ ଚାରିନାମ ପାରାର ।

୯ । ମହିଷଶିଙ୍ଗକୁ ଗବଳ କହି ।

୧୦ । ଅଭ୍ରକ । ଗିରିଜ । ଅମଳ ଏ ତିନିନାମ ଅଭ୍ରର ।

୧୧ । ସ୍ରୋତୋଞ୍ଜନ । ସୌବୀର । କାପୋତାଞ୍ଜନ । ଯାମୁନ ଏ ଚାରିନାମ କୃଷ୍ଣବର୍ଣ୍ଣ-ଅଞ୍ଜନର ।

୧୨ । ତୁତ୍ଥାଞ୍ଜନ । ଶିଖିଗ୍ରୀବ । ବିତୁନ୍ନକ । ମୟୂରକ ଏ ଚାରିନାମ ତମ୍ବୂଅଞ୍ଜନ ବଣେଶର ।

[୧] କର୍ପରୀ ଦାର୍ବିକା କ୍ୱାଥୋଦ୍ଭବଂ ତୁତ୍ଥଂ [୨] ରସାଞ୍ଜନଂ ।
ରସଗର୍ଭଂ ତାର୍କ୍ଷ୍ୟଶୈଳଂ [୩] ଗନ୍ଧାଶ୍ମନି ତୁ ଗନ୍ଧକଃ ।
ସୌଗନ୍ଧିକଶ୍ଚ [୪] ଚକ୍ଷୁଷ୍ୟା କୁଲାଲ୍ୟୌ ତୁ କୁଲତ୍ଥିକା ।
[୫] ରୀତିପୁଷ୍ପଂ ପୁଷ୍ପକେତୁ ପୌଷ୍ପକଂ କୁସୁମାଞ୍ଜନଂ ।
[୬] ପିଞ୍ଜରଂ ପୀତନଂ ତାଳମାଳଂ ଚ ହରିତାଳକେ ।
[୭] ଗୈରେୟମର୍ଥ୍ୟଂ ଗିରିଜମଶ୍ମଜଂ ଚ ଶିଳାଜତୁ ।
[୮] ବୋଲ ଗନ୍ଧରସ ପ୍ରାଣପିଣ୍ଡ ଗୋପ ରସାଃ ସମାଃ ।
[୯] ଡିଣ୍ଡୀରୋଽବ୍ଧିକଫଃ ଫେନଃ [୧୦] ସିନ୍ଦୂରଂ ନାଗସମ୍ଭବଂ ।
[୧୧] ନାଗ ସୀସକ ଯୋଗେଷ୍ଟ ବପ୍ରାଣି [୧୨] ତ୍ରପୁ ପିଚ୍ଚଟଂ ॥
ରଙ୍ଗ ବଙ୍ଗେ[୧୩]ଽଥ ପିଚୁସ୍ତୂଲୋ [୧୪]ଽଥ କମଲୋତ୍ତରଂ
ସ୍ୟାତ୍ କୁସୁମ୍ଭଂ ବହ୍ନି ଶିଖଂ ମହାରଜନମିତ୍ୟପି ॥

---

୧ । କର୍ପରୀ । ଦାର୍ବିକ ଏ ଦୁଇନାମ କ୍ୱାଥୋଦ୍ଭବ ତୁତ୍ଥ ଭେଦର ।
୨ । ରସାଞ୍ଜନ । ରସଗର୍ଭ । ତାର୍କ୍ଷ୍ୟଶୈଳ ଏ ତିନିନାମ କୃଷ୍ଣବର୍ଣ୍ଣ ଅଞ୍ଜନର ।
୩ । ଗନ୍ଧାଶ୍ମ । ଗନ୍ଧକ । ସୌଗନ୍ଧିକ ଏ ତିନିନାମ ଗନ୍ଧକର ।
୪ । ଚକ୍ଷୁଷ୍ୟ । କୁଲାଲୀ । କୁଲତ୍ଥିକା ଏ ତିନିନାମ ଅଞ୍ଜନବିଶେଷର ।
୫ । ରୀତିପୁଷ୍ପ । ପୁଷ୍ପକେତୁ । ପୌଷ୍ପକ । କୁସୁମାଞ୍ଜନ ଏ ଚାରିନାମ ପିତଳମଳର ।
୬ । ପିଞ୍ଜର । ପୀତନ । ତାଳ । ଅଳ । ହରିତାଳକ ଏ ପାଞ୍ଚନାମ ହରିତାଳର ।
୭ । ଗୈରେୟ । ଅର୍ଥ୍ୟ । ଗିରିଜ । ଅଶ୍ମଜ । ଶିଳାଜତୁ ଏ ପାଞ୍ଚନାମ ଗେରୂର ।
୮ । ବୋଲ । ଗନ୍ଧରସ । ପ୍ରାଣ । ପିଣ୍ଡ । ଗୋପ । ରସ ଏ ଛଅନାମ ଗନ୍ଧରସର ।
୯ । ଡିଣ୍ଡୀର । ଅବ୍ଧିକଫ । ଫେନ ଏ ତିନିନାମ ସମୁଦ୍ରଫେନର ।
୧୦ । ସିନ୍ଦୂର । ନାଗସମ୍ଭବ ଏ ଦୁଇନାମ ସିନ୍ଦୂରର ।
୧୧ । ନାଗ । ସୀସକ । ଯୋଗେଷ୍ଟ । ବପ୍ର ଏ ଚାରିନାମ ସୀସାର ।
୧୨ । ତ୍ରପୁ । ପିଚ୍ଚଟ । ରଙ୍ଗ । ବଙ୍ଗ ଏ ଚାରିନାମ ରଙ୍ଗର ।
୧୩ । ପିଚୁ । ତୂଳ ଏ ଦୁଇନାମ ତୂଳାର ।
୧୪ । କମଲୋତ୍ତର । କୁସୁମ୍ଭ । ବହ୍ନିଶିଖ । ମହାରଜନ ଏ ଚାରିନାମ କୁସୁମଫୁଲର ।

[୧] ମେଷକମ୍ବଲ ଊର୍ଣ୍ଣାୟୁଃ [୨] ଶଶୋର୍ଣ୍ଣଂ ଶଶଲୋମନି ।
[୩] ମଧୁ କ୍ଷୌଦ୍ରଂ ମାକ୍ଷିକାଦି [୪] ମଧୂଚ୍ଛିଷ୍ଟଂ ତୁ ସିକ୍ଥକଂ ॥
[୫] ମନଃଶିଳା ମନୋଗୁପ୍ତା ମନୋହ୍ୱା ନାଗଜିହ୍ୱିକା ।
[୬] ନୈପାଳୀ କୁନଟୀ ଗୋଳା [୭] ଯବକ୍ଷାରୋ ଯବାଗ୍ରଜଃ ॥
ପାକ୍ୟୋ [୮] ଽଥ ସର୍ଜ୍ଜିକାକ୍ଷାରଃ କାପୋତଃ ସୁଖବର୍ଚ୍ଚକଃ ।
ସୌବର୍ଚ୍ଚଲଂ ସ୍ୟାଦ୍ରୁଚକଂ [୯] ତ୍ୱକ୍କ୍ଷୀରୀ ବଶରୋଚନା ॥
[୧୦] ଶିଗ୍ରୁଜଂ ଶ୍ୱେତମରିଚଂ [୧୧] ମୋରଟଂ ମୂଳମୈକ୍ଷବଂ ।
[୧୨] ଗ୍ରନ୍ଥିକଂ ପିପ୍ପଳୀମୂଳଂ ଚଟିକାଶିର ଇତ୍ୟପି ॥
[୧୩] ଗୋଲୋମୀ ଭୂତକେଶୋ ନା [୧୪] ପତ୍ରାଙ୍ଗଂ ରକ୍ତଚନ୍ଦନଂ ।
[୧୫] ତ୍ରିକଟୁ ତ୍ର୍ୟୂଷଣଂ ବ୍ୟୋଷଂ [୧୬] ତ୍ରିଫଳା ତୁ ଫଳତ୍ରିକଂ ॥

---

୧ । ମେଷକମ୍ବଳ । ଊର୍ଣ୍ଣାୟୁ ଏ ଦୁଇନାମ ମେଷଲୋମ କମ୍ବଳର ।
୨ । ଶଶୋର୍ଣ୍ଣ । ଶଶଲୋମନ୍ ଏ ଦୁଇନାମ ( ଶଶାଲୋମର ) ।
୩ । ମଧୁ । କ୍ଷୌଦ୍ର । ମାକ୍ଷିକ ଏ ତିନିନାମ ମହୁର ।
୪ । ମଧୂଚ୍ଛିଷ୍ଟ । ସିକ୍ଥକ ଏ ଦୁଇନାମ ମହମର ।
୫ । ମନଃଶିଳା । ମନୋଗୁପ୍ତା । ମନୋହ୍ୱା । ନାଗଜିହ୍ୱିକା ଏ ଚାରିନାମ ମନଃଶିଳାର ।
୬ । ନୈପାଳୀ । କୁନଟୀ । ଗୋଳା ଏ ତିନିନାମ ନେପାଳଦେଶୋଦ୍ଭବ ଶିଳାଜତୁର ।
୭ । ଯବକ୍ଷାର । ଯବାଗ୍ରଜ । ପାକ୍ୟ ଏ ତିନିନାମ ଯବକ୍ଷାରର । ( ସାଜିମାଟିର ) ।
୮ । ସର୍ଜ୍ଜିକାକ୍ଷାର । କାପୋତ । ସୁଖବର୍ଚ୍ଚକ । ସୌବର୍ଚ୍ଚଳ । ରୁଚକ ଏ ପାଞ୍ଚନାମ
୯ । ତ୍ୱକ୍କ୍ଷୀରୀ । ବଂଶରୋଚନା ଏ ଦୁଇନାମ ବଂଶଲୋଚନାର ।
୧୦ । ଶିଗ୍ରୁଜ । ଶ୍ୱେତମରିଚ ଏ ଦୁଇନାମ ସଜନାମଞ୍ଜିର ।
୧୧ । ଇକ୍ଷୁମୂଳକୁ ମୋରଟ କହି ।
୧୨ । ଗ୍ରନ୍ଥିକ । ପିପ୍ପଳୀମୂଳ । ଚଟିକାଶିରସ୍ ଏ ତିନିନାମ ପିପ୍ପଳୀମୂଳର ।
୧୩ । ଗୋଲୋମୀ । ଭୂତକେଶ ଏ ଦୁଇନାମ ବାବଙ୍ଗବଚର ।
୧୪ । ପତ୍ରାଙ୍ଗ । ରକ୍ତଚନ୍ଦନ ଏ ଦୁଇନାମ ରକ୍ତଚନ୍ଦନ ତୁଲ୍ୟ ଗନ୍ଧଦ୍ରବ୍ୟର ।
୧୫ । ତ୍ରିକଟୁ । ତ୍ର୍ୟୂଷଣ । ବ୍ୟୋଷ ଏ ତିନିନାମ ଶୁଣ୍ଠିପିପ୍ପଳୀ ମରିଚମିଳିତର ।
୧୬ । ହରିଡ଼ା । ବାହାଡ଼ା । ଅଁଳା ଏ ତିନିନାମ ତ୍ରିଫଳାର ।

## ଶୂଦ୍ରବର୍ଗ ।

[୧] ଶୂଦ୍ରାଶ୍ଚାବରବର୍ଣ୍ଣାଶ୍ଚ ବୃଷଳାଶ୍ଚ ଜଘନ୍ୟଜାଃ ।
[୨] ଆଚଣ୍ଡାଳାତ୍ତୁ ସଙ୍କୀର୍ଣ୍ଣା ଅମ୍ବଷ୍ଠ କରଣାଦୟଃ ॥
[୩] ଶୂଦ୍ରାବିଶୋସ୍ତୁ କରଣୋ [୪] ଽମ୍ବଷ୍ଠୋ ବୈଶ୍ୟାଦ୍ୱିଜନ୍ମନୋଃ ।
[୫] ଶୂଦ୍ରା କ୍ଷତ୍ରିୟୟୋରୁଗ୍ରୋ [୬] ମାଗଧଃ କ୍ଷତ୍ରିୟାବିଶୋଃ ॥
[୭] ମାହିଷୋଽର୍ଯ୍ୟା କ୍ଷତ୍ରିୟୟୋଃ [୮] କ୍ଷତ୍ତାର୍ଯ୍ୟା ଶୂଦ୍ରୟୋଃ ସୁତଃ ।
[୯] ବ୍ରାହ୍ମଣ୍ୟାଂ କ୍ଷତ୍ରିୟାତ୍ ସୂତଃ [୧୦] ତସ୍ୟାଂ ବୈଦେହକୋ ବିଶଃ
[୧୧] ରଥକାରସ୍ତୁ ମାହିଷ୍ୟାତ୍ କରଣ୍ୟାଂ ଯସ୍ୟ ସମ୍ଭବଃ ।
[୧୨] ସ୍ୟାଚ୍ଚାଣ୍ଡାଳସ୍ତୁ ଜନକୋ ବ୍ରାହ୍ମଣ୍ୟାଂ ବୃଷଳେନ ଯଃ ॥
[୧୩] କାରୁଃ ଶିଳ୍ପୀ [୧୪] ସଂହତୈସ୍ତୈର୍ଦ୍ୱୟୋଃ ଶ୍ରେଣିଃ ସଜାତିଭିଃ
[୧୫] କୁଳକଃ ସ୍ୟାତ୍ କୁଳଶ୍ରେଷ୍ଠୀ [୧୬] ମାଲାକାରସ୍ତୁ ମାଳିକଃ ॥

---

୧ । ଶୂଦ୍ର । ଅବରବର୍ଣ୍ଣ । ବୃଷଳ । ଜଘନ୍ୟଜ ଏ ଚଉନାମ ଶୂଦ୍ରର ।
୨ । ଅମ୍ବଷ୍ଠକରଣାଦିଙ୍କି ସଙ୍କୀର୍ଣ୍ଣ କହି ।
୩ । ଶୂଦ୍ରା ଗର୍ଭେ ବୈଶ୍ୟଜାତ ପୁତ୍ରକୁ କରଣ କହି ।
୪ । ବ୍ରାହ୍ମଣଠାରୁ ବୈଶ୍ୟାଗର୍ଭଜାତକୁ ଅମ୍ବଷ୍ଠ କହି ।
୫ । କ୍ଷତ୍ରିୟଠାରୁ ଶୂଦ୍ରାଗର୍ଭଜାତକୁ ଉଗ୍ର କହି ।
୬ । ବୈଶ୍ୟଠାରୁ କ୍ଷତ୍ରିୟାଗର୍ଭଜାତ ସନ୍ତାନର ନାମ ମାଗଧ ।
୭ । କ୍ଷତ୍ରିୟଠାରୁ ବୈଶ୍ୟାଗର୍ଭଜାତ ବ୍ୟକ୍ତିକି ମାହିଷ୍ୟ କହି ।
୮ । ଶୂଦ୍ରଠାରୁ ବୈଶ୍ୟାଗର୍ଭଜାତ ବ୍ୟକ୍ତିକି କ୍ଷତ୍ତ୍ର କହି ।
୯ । କ୍ଷତ୍ରିୟଠାରୁ ବ୍ରାହ୍ମଣୀଗର୍ଭଜାତ ବ୍ୟକ୍ତିକି ସୂତ କହି ।
୧୦ । ବୈଶ୍ୟଠାରୁ ବ୍ରାହ୍ମଣୀଗର୍ଭଜାତ ବ୍ୟକ୍ତିକି ବୈଦେହକ କହି ।
୧୧ । ମାହିଷ୍ୟଠାରୁ କରଣୀ ଗର୍ଭଜାତ ବ୍ୟକ୍ତିଙ୍କି ରଥକାର କହି ।
୧୨ । ଶୂଦ୍ରଠାରୁ ବ୍ରାହ୍ମଣୀଗର୍ଭଜାତ ବ୍ୟକ୍ତିକି ଚଣ୍ଡାଳ କହି ।
୧୩ । କାରୁ । ଶିଳ୍ପିନ୍ ଏ ଦୁଇନାମ ଶଳ୍ପକାରର । ୧୪ । ଶିଳ୍ପକାରସମୂହକୁ ଶ୍ରେଣୀ କହି
୧୫ । କୁଳକ । କୁଳଶ୍ରେଷ୍ଠିନ୍ ଏ ଦୁଇନାମ କୁଳମଧ୍ୟରେ ଶ୍ରେଷ୍ଠ ବ୍ୟକ୍ତିର ।
୧୬ । ମାଳାକାର । ମାଳିକ ଏ ଦୁଇନାମ ମାଳାକାରର ।

[୧] କୁମ୍ଭକାରଃ କୁଲାଲଃ ସ୍ୟାତ୍ [୨] ପଲଗଣ୍ଡସ୍ତୁ ଲେପକଃ ।
[୩] ତନ୍ତୁବାୟଃ କୁବିନ୍ଦଃ ସ୍ୟା [୪] ତ୍ତୁନ୍ନବାୟସ୍ତୁ ସୌଚିକଃ ।
[୫] ରଙ୍ଗାଜୀବଶ୍ଚିତ୍ରକରଃ [୬] ଶସ୍ତ୍ରମାର୍ଜ୍ଜୋଽସିଧାବକଃ ।
[୭] ପାଦୂକୃଚ୍ଚର୍ମ୍ମକାରଃ ସ୍ୟା [୮] ଦ୍ବ୍ୟୋକାରୋ ଲୋହକାରକଃ ॥
[୯] ନାଡ଼ୀନ୍ଧମଃ ସ୍ୱର୍ଣ୍ଣକାରଃ କଳାଦୋ ରୁକ୍ମକାରକେ ।
[୧୦] ସ୍ୟାଚ୍ଛାଙ୍ଖିକଃ କାମ୍ବବିକଃ [୧୧] ଶୌଲ୍ୱିକ ସ୍ତାମ୍ରକୁଟ୍ଟକଃ ॥
[୧୨] ତକ୍ଷା ତୁ ବର୍ଦ୍ଧକିସ୍ତ୍ୱଷ୍ଟା ରଥକାରଶ୍ଚ କାଷ୍ଠତଟ୍ ।
[୧୩] ଗ୍ରାମାଧୀନୋ ଗ୍ରାମତକ୍ଷଃ [୧୪] କୌଟତକ୍ଷୋଽନଧୀନକଃ ॥
[୧୫] କ୍ଷୁରୀ ମୁଣ୍ଡୀ ଦିବାକୀର୍ତ୍ତି ନାପିତାନ୍ତାବସାୟିନଃ ।
[୧୬] ନିର୍ଣ୍ଣେଜକଃ ସ୍ୟାଦ୍ରଜକଃ [୧୭] ଶୌଣ୍ଡିକୋ ମଣ୍ଡହାରକଃ ॥

---

୧ । କୁମ୍ଭକାର । କୁଲାଲ ଏ ଦୁଇନାମ କୁମ୍ଭାରର ।
୨ । ପଲଗଣ୍ଡ । ଲେପକ ଏ ଦୁଇନାମ ଦେବାଳ ଧର୍ମଣକାରର ।
୩ । ତନ୍ତୁବାୟ । କୁବିନ୍ଦ ଏ ଦୁଇନାମ ତନ୍ତିର ।
୪ । ତୁନ୍ନବାୟ । ସୌଚିକ ଏ ଦୁଇନାମ ଦରଜିର ।
୫ । ରଙ୍ଗାଜୀବ । ଚିତ୍ରକର ଏ ଦୁଇନାମ ଚିତ୍ରକରର ।
୬ । ଶସ୍ତ୍ରମାର୍ଜ୍ଜ । ଅସିଧାବକ ଏ ଦୁଇନାମ ଅସ୍ତ୍ରନିର୍ମଳକାରକର ।
୭ । ପାଦୂକୃତ୍ । ଚର୍ମ୍ମକାର ଏ ଦୁଇନାମ ମୋଚିର ।
୮ । ବ୍ୟୋକାର । ଲୋହକାରକ ଏ ଦୁଇନାମ କମାରର ।
୯ । ନାଡ଼ୀନ୍ଧମ । ସ୍ୱର୍ଣ୍ଣକାର । କଳାଦ । ରୁକ୍ମକାର ଏ ଚାରିନାମ ସୁନାରର ।
୧୦ । ଶାଙ୍ଖିକ । କାମ୍ବବିକ ଏ ଦୁଇନାମ ଶଙ୍ଖାରିର ।
୧୧ । ଶୌଲ୍ୱିକ । ତାମ୍ରକୁଟ୍ଟକ ଏ ଦୁଇନାମ କଂସାରିର ।
୧୨ । ତକ୍ଷନ୍ । ବର୍ଦ୍ଧକି, ତ୍ୱଷ୍ଟୃ, ରଥକାର, କାଷ୍ଠତକ୍ଷ ଏ ପାଞ୍ଚନାମ ବଢ଼େଇର ।
୧୩ । ଗ୍ରାମର ଅଧୀନ ବଢ଼େଇକୁ ଗ୍ରାମତକ୍ଷ କହନ୍ତି ।
୧୪ । ଅନଧୀନ ବଢ଼େଇକୁ କୌଟତକ୍ଷ କହନ୍ତି ।
୧୫ । କ୍ଷୁରିନ୍ । ମୁଣ୍ଡିନ୍, ଦିବାକୀର୍ତ୍ତି, ନାପିତ ଅନ୍ତାବସାୟିନ୍ ଏ ପାଞ୍ଚନାମ ଭଣ୍ଡାରୀର ।
୧୬ । ନିର୍ଣ୍ଣେଜକ । ରଜକ ଏ ଦୁଇନାମ ଧୋବାର ।
୧୭ । ଶୌଣ୍ଡିକ । ମଣ୍ଡହାରକ ଏ ଦୁଇନାମ ଶୁଣ୍ଢିର ।

[୧] ଜାବାଲଃ ସ୍ୟାଦଜାଜୀବୋ [୨] ଦେବାଜୀବୀ ତୁ ଦେବଲଃ ॥
[୩] ସ୍ୟାନ୍ମାୟା ଶାମ୍ବରୀ [୪] ମାୟାକାରସ୍ତୁ ପ୍ରାତିହାରିକଃ ।
[୫] ଶୈଳାଳିନସ୍ତୁ ଶୈଳୂଷା ଜାୟାଜୀବାଃ କୃଶାଶ୍ୱିନଃ ।
ଭରତା ଇତ୍ୟପି ନଟା [୬] ଶ୍ଚାରଣସ୍ତୁ କୁଶୀଲବାଃ ।
[୭] ମାର୍ଦଙ୍ଗିକା ମୌରଜିକାଃ [୮] ପାଣିବାଦାସ୍ତୁ ପାଣିଘାଃ ॥
[୯] ବେଣୁଧ୍ମାଃ ସ୍ୟୁର୍ବୈଣବିକା [୧୦] ବୀଣାବାଦାସ୍ତୁ ବୈଣିକାଃ
[୧୧] ଜୀବାନ୍ତକଃ ଶାକୁନିକୋ [୧୨] ଦ୍ୱୌ ବାଗୁରିକଜାଳିକୌ ॥
[୧୩] ବୈତଂସିକଃ କୌଟିକଶ୍ଚ ମାଂସିକଶ୍ଚ ସମଂ ତ୍ରୟଂ ।
[୧୪] ଭୃତକୋ ଭୃତିଭୁକ୍ କର୍ମକରୋ ବୈତନିକୋଽପି ସଃ ॥
[୧୫] ବାର୍ତ୍ତାବହୋ ବୈବଧିକୋ [୧୬] ଭାରବାହସ୍ତୁ ଭାରିକଃ ॥

---

୧ । ଜାବାଳ । ଅଜାଜୀବ ଏ ଦୁଇନାମ ଛେଳିପାଳିବା ଲୋକର ।
୨ । ଦେବାଜୀବିନ୍ । ଦେବଲ ଏ ଦୁଇନାମ ପୂଜାହାରୁ ବ୍ରାହ୍ମଣର ।
୩ । ମାୟା । ଶାମ୍ବରୀ ଏ ଦୁଇନାମ ଇନ୍ଦ୍ରଜାଲିକ ମାୟାବିଦ୍ୟାର ।
୪ । ମାୟାକାର । ପ୍ରାତିହାରିକ ଏ ଦୁଇନାମ ବାଜିକରର ।
୫ । ଶୈଳାଳିନ୍ । ଶୈଳୂଷ । ଜାୟାଜୀବ । କୃଶାଶ୍ୱିନ୍ । ଭରତ । ନଟ ଏ ଛନାମ [ ନଟର ।
୬ । ଚାରଣ । କୁଶୀଲବ ଏ ଦୁଇନାମ ନଟବିଶେଷର ।
୭ । ମାର୍ଦଙ୍ଗିକ । ମୌରଜିକ ଏ ଦୁଇନାମ ମୃଦଙ୍ଗ ବାଦ୍ୟକରର ।
୮ । ପାଣିବାଦ । ପାଣିଘ ଏ ଦୁଇନାମ ତାଳିବଜାଇବା ଲୋକର ।
୯ । ବେଣୁଧ୍ମ । ବୈଣବିକ ଏ ଦୁଇନାମ ବଂଶୀବାଦକର ।
୧୦ । ବୀଣାବାଦ । ବୈଣିକ ଏ ଦୁଇନାମ ବୀଣାବାଦକର ।
୧୧ । ଜୀବାନ୍ତକ । ଶାକୁନିକ ଏ ଦୁଇନାମ ଚଢ଼ାଇମାରର ।
୧୨ । ବାଗୁରିକ । ଜାଳିକ ଏ ଦୁଇନାମ ଜାଲଦ୍ୱାରା ମୃଗାଦି ଧରାର ।
୧୩ । ବୈତଂସିକ । କୌଟିକ । ମାଂସିକ ଏ ତିନିନାମ ମାଂସଜୀବୀ ବ୍ୟକ୍ତିର ।
୧୪ । ଭୃତକ । ଭୃତିଭୁଜ୍ । କର୍ମକର । ବୈତନିକ ଏ ଚାରିନାମ ବେତନୋପଜୀବୀ [ କର୍ମକାରକର ।
୧୫ । ବାର୍ତ୍ତାବହ । ବୈବଧିକ ଏ ଦୁଇନାମ ବାର୍ତ୍ତାବାହକର ।
୧୬ । ଭାରବାହ । ଭାରିକ ଏ ଦୁଇନାମ ଭାରବାହକର ।

[୧] ବିବର୍ଣ୍ଣଃ ପାମରୋ ନୀଚଃ ପ୍ରାକୃତଶ୍ଚ ପୃଥଗ୍‌ଜନଃ ।
ନିହୀନୋ ଽପସଦୋ ଜାଲ୍ମଃ କ୍ଷୁଲ୍ଲକ ଶ୍ଚେତରଶ୍ଚ ସଃ ।
[୨] ଭୃତ୍ୟେ ଦାସେର ଦାସେୟ ଦାସ ଗୋପ୍ୟକ ଚେଟକାଃ ।
ନିଯୋଜ୍ୟ କିଙ୍କର ପ୍ରେଷ୍ୟ ଭୁଜିଷ୍ୟ ପରିଚାରକାଃ ।
[୩] ପରାଚିତ ପରିସ୍କନ୍ଦ ପରଜାତ ପରୈଧିତାଃ ।
[୪] ମନ୍ଦସ୍ତୁନ୍ଦପରିମୃଜ ଆଳସଃ ଶୀତକୋ ଽଲସୋ ଽନୁଷ୍ଣଃ ।
[୫] ଦକ୍ଷେ ତୁ ଚତୁର ପେଶଲ ପଟବଃ ସୂତ୍ଥାନ ଉଷ୍ଣ ଚ ।
[୬] ଚଣ୍ଡାଳ ପ୍ଲବ ମାତଙ୍ଗ ଦିବାକୀର୍ତ୍ତି ଜନଙ୍ଗମାଃ ।
ନିଷାଦ ଶ୍ୱପଚାବନ୍ତେବାସି ଚାଣ୍ଡାଳ ପୁକ୍କସାଃ ।
[୭] ଭେଦାଃ କିରାତଃ ଶବରଃ ପୁଳିନ୍ଦା [୮] ମ୍ଳେଚ୍ଛଜାତୟଃ ।
[୯] ବ୍ୟାଧୋ ମୃଗବଧାଜୀବୋ ମୃଗୟୁର୍ଲୁବ୍ଧକୋ ଽପି ସଃ ।

---

୧ । ବିବର୍ଣ୍ଣ । ପାମର । ନୀଚ । ପ୍ରାକୃତ । ପୃଥଗ୍‌ଜନ । ନିହୀନ । ଅପସଦ । ଜାଲ୍ମ । କ୍ଷୁଲ୍ଲକ । ଇତର ଏ ଦଶନାମ ନୀଚର ।

୨ । ଭୃତ୍ୟ । ଦାସେର । ଦାସେୟ । ଦାସ । ଗୋପ୍ୟକ । ଚେଟକ । ନିଯୋଜ୍ୟ । କିଙ୍କର । ପ୍ରେଷ୍ୟ । ଭୁଜିଷ୍ୟ । ପରିଚାରକ ଏ ଏଗାରନାମ ଦାସର ।

୩ । ପରାଚିତ । ପରିସ୍କନ୍ଦ । ପରଜାତ । ପରୈଧିତ ଏ ଚାରିନାମ ପରଦ୍ୱାରା ପ୍ରତିପାଳିତ ବ୍ୟକ୍ତିର ।

୪ । ମନ୍ଦ । ତୁନ୍ଦପରିମୃଜ । ଆଳସ୍ୟ । ଶୀତକ । ଅଳସ । ଅନୁଷ୍ଣ ଏ ଛନାମ ଅଳସ୍ୟ-ଯୁକ୍ତ ପୁରୁଷର ।

୫ । ଦକ୍ଷ । ଚତୁର । ପେଶଲ । ପଟୁ । ସୂତ୍ଥାନ । ଉଷ୍ଣ ଏ ଛନାମ ଚତୁର ବ୍ୟକ୍ତିର ।

୬ । ଚଣ୍ଡାଳ । ପ୍ଲବ । ମାତଙ୍ଗ । ଦିବାକୀର୍ତ୍ତି । ଜନଙ୍ଗମ । ନିଷାଦ । ଶ୍ୱପଚ । ଅନ୍ତେବାସିନ୍ । ଚାଣ୍ଡାଳ । ପୁକ୍କସ ଏ ଦଶନାମ ଚଣ୍ଡାଳର ।

୭ । କିରାତ । ଶବର । ପୁଳିନ୍ଦ ଏ ତିନିନାମ ଶବରର ।

୮ । ଏହି ତିନିଙ୍କର ସାଧାରଣ ନାମକୁ ମ୍ଳେଚ୍ଛ କହି ।

୯ । ବ୍ୟାଧ । ମୃଗବଧାଜୀବ । ମୃଗୟୁ । ଲୁବ୍ଧକ ଏ ଚାରିନାମ ବ୍ୟାଧର ।

[୧] କୌଳେୟକଃ ସାରମେୟଃ କୁକ୍କୁରୋ ମୃଗଦଂଶକଃ ।
ଶୁନକୋ ଭଷକଃ ଶ୍ୱା ସ୍ୟା [୨] ଦଲର୍କସ୍ତୁ ସ ଯୋଗିତଃ ॥
[୩] ଶ୍ୱା ବିଶ୍ୱକଦ୍ରୁର୍ମୃଗୟାକୁଶଳଃ [୪] ସରମା ଶୁନୀ ।
[୫] ବିଟ୍‌ଚରଃ ଶୂକରୋ ଗ୍ରାମ୍ୟୋ [୬] ବର୍କର ସ୍ତରୁଣଃ ପଶୁଃ ॥
[୭] ଅଚ୍ଛୋଦନଂ ମୃଗବ୍ୟଂ ସ୍ୟାଦାଖେଟୋ ମୃଗୟା ସ୍ତ୍ରିୟାଂ ।
[୮] ଦକ୍ଷିଣାରୁର୍ଲୁବ୍ଧଯୋଗାଦକ୍ଷିଣେର୍ମ୍ମା କୁରଙ୍ଗକଃ ॥
[୯] ଚୌରୈକାଗାରିକ ସ୍ତେନ ଦସ୍ୟୁ ତସ୍କର ମୋଷକାଃ ।
ପ୍ରତିରୋଧି ପରାସ୍କନ୍ଦି ପାଟଚ୍ଚର ମଳିମ୍ଳୁଚାଃ ॥
[୧୦] ଚୌରିକା ସ୍ତୈନ୍ୟଚୌର୍ଯ୍ୟେ ଚ ସ୍ତେୟଂ [୧୧] ଲୋପ୍ତ୍ରନ୍ତୁ ତଦ୍ଧନଂ
[୧୨] ବୀତଂସ ସ୍ତୂପକରଣଂ ବନ୍ଧନେ ମୃଗପକ୍ଷିଣାଂ ॥
[୧୩] ଉନ୍ମାଥଃ କୂଟଯନ୍ତ୍ରଂ ସ୍ୟା [୧୪] ଦ୍ୱାଗୁରା ମୃଗବନ୍ଧନୀ ।

---

୧ । କୌଳେୟକ । ସାରମେୟ । କୁକ୍କୁର । ମୃଗଦଂଶକ । ଶୁନକ । ଭଷକ । ଶ୍ୱାନ । ଏ ସାତନାମ କୁକ୍କୁରର ।   ୨ । କ୍ଷିପ୍ତକୁକ୍କୁରକୁ ଅଲର୍କ କହି ।

୩ । ମୃଗୟାକୁଶଳ କୁକ୍କୁରକୁ ବିଶ୍ୱକଦ୍ରୁ କହି ।

୪ । ସରମା । ଶୁନୀ ଏ ଦୁଇନାମ କୁକ୍କୁରପତ୍ନୀର ।

୫ । ବିଟ୍‌ଚର । ଗ୍ରାମ୍ୟଶୂକର ଏ ଦୁଇନାମ ଗ୍ରାମ୍ୟଶୂକରର ।

୬ । ତରୁଣ ପଶୁମାନଙ୍କୁ ବର୍କର କହି ।

୭ । ଅଚ୍ଛୋଦନ । ମୃଗବ୍ୟ । ଆଖେଟ । ମୃଗୟା ଏ ଚାରିନାମ ମୃଗୟାର ।

୮ । ଦକ୍ଷିଣାଙ୍ଗରେ ବଧ ମୃଗକୁ ଦକ୍ଷିଣେର୍ମ୍ମନ୍ କହି ।

୯ । ଚୌର । ଐକାଗାରିକ । ସ୍ତେନ । ଦସ୍ୟୁ । ତସ୍କର । ମୋଷକ । ପ୍ରତିରୋଧିନ୍ । ପରାସ୍କନ୍ଦିନ୍ । ପାଟଚ୍ଚର । ମଳିମ୍ଳୁଚ ଏ ଦଶନାମ ଚୋରର ।

୧୦ । ଚୌରିକା । ସ୍ତୈନ୍ୟ । ଚୌର୍ଯ୍ୟ । ସ୍ତେୟ ଏ ଚାରିନାମ ଚୌର୍ଯ୍ୟକର୍ମ୍ମର ।

୧୧ । ଚୋରିକରିବା ଧନକୁ ଲୋପ୍ତ୍ର କହି ।

୧୨ । ମୃଗପକ୍ଷୀଙ୍କର ବନ୍ଧନ ନିମନ୍ତେ ପାଶାଦିକୁ ବୀତଂସ କହି ।

୧୩ । ଉନ୍ମାଥ । କୂଟଯନ୍ତ୍ର ଏ ଦୁଇନାମ ଫାନ୍ଦର ।

୧୪ । ବାଗୁରା । ମୃଗବନ୍ଧନୀ ଏ ଦୁଇନାମ ଜାଲବିଶେଷର ।

[୧] ଶୁଲ୍ବଂ ବରାଟକଃ ସ୍ତ୍ରୀ ତୁ ରଜ୍ଜୁ ସ୍ତ୍ରିଷୁ ବଟୀ ଗୁଣଃ ।
[୨] ଉଦ୍ଘାଟନଂ ଘଟୀଯନ୍ତ୍ରଂ ସଲିଲୋଦ୍ବାହନଂ ପ୍ରହେଃ ।
[୩] ପୁଂସି ବେମା ବାୟଦଣ୍ଡଃ [୪] ସୂତ୍ରାଣି ନରି ତନ୍ତବଃ ।
[୫] ବାଣିର୍ବ୍ୟୂତିଃ ସ୍ତ୍ରିୟୌ ତୁଲ୍ୟେ [୬] ପୁସ୍ତଂ ଲେପ୍ୟାଦିକର୍ମଣି ।
[୭] ପଞ୍ଚାଲିକା ପୁତ୍ରିକା ସ୍ୟାଦ୍ବସ୍ତ୍ରଦନ୍ତାଦିଭିଃ କୃତାଃ ।
[୮] ପିଟକଃ ପେଟକଃ ପେଟା ମଞ୍ଜୂଷା [୯] ଽଥ ବିହଙ୍ଗିକା ।
ଭାରଯଷ୍ଟି [୧୦] ସ୍ତଦାଲମ୍ବି ଶିକ୍ୟଂ କାଚୋ [୧୧] ଽଥ ପାଦୂକା
ପାଦୂଃ ରୂପାନତ୍ ସ୍ତ୍ରୀ [୧୨] ସୈବାନୁପଦୀନା ପଦାୟତା ।
[୧୩] ନଦ୍ଧ୍ରୀ ବଧ୍ରୀ ବରତ୍ରା ସ୍ୟା [୧୪] ଦଶ୍ୱାଦେ ସ୍ତାଡ଼ନୀ କଶା ।
[୧୫] ଚଣ୍ଡାଲିକା ତୁ କଣ୍ଡୋଲବୀଣା ଚଣ୍ଡାଲବଲ୍ଲକୀ ।

---

୧ । ଶୁଲ୍ବ । ବରାଟକ । ରଜ୍ଜୁ । ବଟୀ । ଗୁଣ ଏ ପାଞ୍ଚନାମ ଦଉଡିର ।
୨ । ଉଦ୍ଘାଟକ । ଘଟୀଯନ୍ତ୍ର ଏ ଦୁଇନାମ କୂଅରୁ ଜଳକାଢ଼ିବା ନିମିତ୍ତ ରହଟ୍ଟଘଟ କଳଶିର ।
୩ । ବେମନ୍ । ବାୟଦଣ୍ଡ ଏ ଦୁଇନାମ ବସ୍ତ୍ର ବୁଣିବା ଦଣ୍ଡର ।
୪ । ସୂତ୍ର । ତନ୍ତୁ ଏ ଦୁଇନାମ ଲୁଗା ବୁଣିବା ସୂତାର ।
୫ । ବାଣି । ବ୍ୟୂତି ଏ ଦୁଇନାମ ବସ୍ତ୍ର ବୁଣିବା କ୍ରିୟାର ।
୬ । ଲେପାଦି କର୍ମକୁ ପୁସ୍ତ କହି ।
୭ । ପଞ୍ଚାଳିକା । ପୁତ୍ରିକା ଏ ଦୁଇନାମ ବସ୍ତ୍ରଦାନ୍ତସଙ୍ଗୀକୃତ ପିତୁଳାର ।
୮ । ପିଟକ । ପେଟକ । ପେଟା ମଞ୍ଜୁଷା ଏ ଚାରିନାମ ପେଡିର ।
୯ । ବିହଙ୍ଗିକା । ଭାରଯଷ୍ଟି ଏ ଦୁଇନାମ କାଉଡ଼ି ବାଉଁଶର ।
୧୦ । ଶିକ୍ୟ । କାଚ ଏ ଦୁଇନାମ ଭାରବୁହାଶିକାର ।
୧୧ । ପାଦୂକା । ପାଦୂ । ଉପାନହ ଏ ତିନିନାମ ପାଦୁକାର ।
୧୨ । ପାଦପ୍ରମାଣର ନାମକୁ ଅନୁପଦୀନା କହି ।
୧୩ । ନଦ୍ଧ୍ରୀ । ବଧ୍ରୀ । ବରତ୍ରା ଏ ତିନିନାମ ଚମଦଉଡିର ।
୧୪ । ଘୋଡାଦି ମାରିବାର୍ଥ କୋରଡାକୁ କଶା କହି ।
୧୫ । ଚଣ୍ଡାଳିକା । କଣ୍ଡୋଳବୀଣା । ଚଣ୍ଡାଳବଲ୍ଲକୀ ଏ ତିନିନାମ ବୀଣାବିଶେଷର ।

[୧] ନାରାଚୀ ସ୍ୟାଦେଷଣିକା [୨] ଶାଣସ୍ତୁ ନିକଷଃ କଷଃ ॥
[୩] ବ୍ରଶ୍ଚନଃ ପତ୍ରପରଶୁ [୪] ରୀଷିକା ତୂଲିକା ସମେ ।
[୫] ତୈଜସାବର୍ତ୍ତନୀ ମୂଷା [୬] ଭସ୍ତ୍ରା ଚର୍ମ୍ମପ୍ରସେବିକା ॥
[୭] ଆସ୍ଫୋଟନୀ ବେଧନିକା [୮] କୃପାଣୀ କର୍ତ୍ତରୀ ସମେ ।
[୯] ବୃକ୍ଷାଦନୋ ବୃକ୍ଷଭେଦୀ [୧୦] ଟଙ୍କଃ ପାଷାଣଦାରଣଃ ॥
[୧୧] କ୍ରକଚୋଽସ୍ତ୍ରୀ କରପତ୍ରଂ [୧୨] ସ୍ୟାଦାରା ଚର୍ମ୍ମଭେଦିକା ।
[୧୩] ସୂର୍ମ୍ମୀ ସ୍ଥୂଣା ଲୋହପ୍ରତିମା [୧୪] ଶିଳ୍ପଂ କର୍ମ୍ମକଳାଦିକଂ ॥
[୧୫] ପ୍ରତିମାନଂ ପ୍ରତିବିମ୍ବଂ ପ୍ରତିମା ପ୍ରତିଯାତନା ପ୍ରତିଚ୍ଛାୟା ।
ପ୍ରତିକୃତିରର୍ଚ୍ଚା ପୁଂସି ପ୍ରତିନିଧି [୧୬] ରୁପମୋପମାନଂ ସ୍ୟାତ୍

---

୧ । ନାରାଚୀ । ଏଷଣିକା ଏ ଦୁଇନାମ ତରାଜୁର ।
୨ । ଶାଣ । ନିକଷ । କଷ ଏ ତିନିନାମ ଅସ୍ତ୍ର ଶାଣଦେବା ପଥରର ନାମ ।
୩ । ବ୍ରଶ୍ଚନ । ପତ୍ରପରଶୁ ଏ ଦୁଇନାମ ଲୁହା ସ୍ୱର୍ଣ୍ଣାଦି ଛେଦନାର୍ଥ ଛେଣିର ।
୪ । ଈଷିକା । ତୂଳିକା ଏ ଦୁଇନାମ ଚିତ୍ରକର କୂଚିର ।
୫ । ତୈଜସାବର୍ତ୍ତନୀ । ମୂଷା ଏ ଦୁଇନାମ ସ୍ୱର୍ଣ୍ଣାଦି ତରଳାଇବା ନିମିତ୍ତ ମୋଉର ।
୬ । ଭସ୍ତ୍ରା । ଚର୍ମ୍ମପ୍ରସେବିକା ଏ ଦୁଇନାମ ସ୍ୱର୍ଣ୍ଣକାରଙ୍କ ଭାତିର ।
୭ । ଆସ୍ଫୋଟନୀ । ବେଧନିକା ଏ ଦୁଇନାମ ମଣି ମୋତି ଛିଦ୍ର କରିବା ଭଅଁରର ।
୮ । କୃପାଣୀ । କର୍ତ୍ତରୀ ଏ ଦୁଇନାମ କତୁରୀର ।
୯ । ବୃକ୍ଷାଦନ । ବୃକ୍ଷଭେଦୀ ଏ ଦୁଇନାମ ବାଟାଳିର ।
୧୦ । ଟଙ୍କ । ପାଷାଣଦାରଣ ଏ ଦୁଇନାମ ପଥରକଟା ଅସ୍ତ୍ରର ।
୧୧ । କ୍ରକଚ । କରପତ୍ର ଏ ଦୁଇନାମ କରତର ।
୧୨ । ଆରା । ଚର୍ମ୍ମଭେଦିକା ଏ ଦୁଇନାମ ମୋଚିଙ୍କ ଚର୍ମ୍ମକଟା ଅସ୍ତ୍ରର ।
୧୩ । ସୂର୍ମ୍ମୀ । ସ୍ଥୂଣା । ଲୋହପ୍ରତିମା ଏ ତିନିନାମ ଲୁହା ପ୍ରତିମାର ।
୧୪ । ଶିଳ୍ପକର୍ମ୍ମକୁ ଶିଳ୍ପ କହି ।
୧୫ । ପ୍ରତିମାନ । ପ୍ରତିବିମ୍ବ । ପ୍ରତିମା । ପ୍ରତିଯାତନା । ପ୍ରତିଚ୍ଛାୟା । ପ୍ରତିକୃତି । ଅର୍ଚ୍ଚା । ପ୍ରତିନିଧି ଏ ଆଠନାମ ପ୍ରତିମୂର୍ତ୍ତି ବା ପ୍ରତିମା ଛବିର ।
୧୬ । ଉପମା । ଉପମାନ ଏ ଦୁଇନାମ ଉପମାର ।

[୧] ବାଚ୍ୟଲିଙ୍ଗାଃ ସମସ୍ତୁଲ୍ୟଃ ସଦୃକ୍ଷଃ ସଦୃଶଃ ସଦୃକ୍ ।
ସାଧାରଣଃ ସମାନଶ୍ଚ [୨] ସ୍ୟୁରୁତ୍ତରପଦେ ତ୍ୱମୀ ।
ନିଭ ସଙ୍କାଶ ନୀକାଶ ପ୍ରତୀକାଶୋପମାଦୟଃ ।
[୩] କର୍ମଣ୍ୟା ତୁ ବିଧା ଭୃତ୍ୟା ଭୃତୟୋ ଭର୍ମ ବେତନଂ ।
ଭରଣ୍ୟଂ ଭରଣଂ ମୂଲ୍ୟଂ ନିର୍ବେଶଃ ପଣ ଇତ୍ୟପି ।
[୪] ସୁରା ହଲିପ୍ରିୟା ହାଲା ପରିସ୍ରୁଦ୍ବରୁଣାତ୍ମଜା ।
ଗନ୍ଧୋତ୍ତମା ପ୍ରସନ୍ନେରା କାଦମ୍ବର୍ଯ୍ୟଃ ପରିସ୍ରୁତା ।
ମଦିରା କଶ୍ୟ ମଦ୍ୟେ ଚାପ୍ୟ [୫] ଅବଦଂଶସ୍ତୁ ଭକ୍ଷଣଂ ।
[୬] ଶୁଣ୍ଡାପାନଂ ମଦସ୍ଥାନଂ [୭] ମଧୁବାରା ମଧୁକ୍ରମାଃ ।
[୮] ମଧ୍ୱାସବୋ ମାଧବକୋ ମଧୁ ମାଧ୍ୱୀକ ମଦ୍ୱୟୋଃ ।
[୯] ମୈରେୟମାସବଃ ଶୀଧୁର୍ମେଦକୋ ଜଗଳଃ ସମୌ ।
[୧୦] ସନ୍ଧାନଂ ସ୍ୟାଦଭିଷବଃ [୧୧] କିଣ୍ୱଂ ପୁଂସି ତୁ ନଗ୍ନହୂଃ ।

---

୧ । ସମ । ତୁଲ୍ୟ । ସଦୃକ୍ଷ । ସଦୃଶ । ସାଧାରଣ । ସମାନ ଏ ଛଅ ନାମ ସଦୃଶର ।
୨ । ନିଭ । ସଂକାଶ । ନୀକାଶ । ପ୍ରତୀକାଶ । ଉପମ ଇତ୍ୟାଦି ଉପମା କହି ।
୩ । କର୍ମଣ୍ୟା । ବିଧା । ଭୃତ୍ୟା । ଭୃତି । ଭର୍ମନ୍ । ବେତନ । ଭରଣ୍ୟ । ଭରଣ । ମୂଲ୍ୟ । ନିର୍ବେଶ । ପଣ ଏ ଏଗାରନାମ ବେତନର ।
୪ । ସୁରା । ହଲିପ୍ରିୟା । ହାଲା । ପରିସ୍ରୁତ୍ । ବରୁଣାତ୍ମଜା । ଗନ୍ଧୋତ୍ତମା । ପ୍ରସନ୍ନା । ଇରା । କାଦମ୍ବରୀ । ପରିସ୍ରୁତା । ମଦିରା । କଶ୍ୟ । ମଦ୍ୟ ଏ ତେରନାମ ମଦିରାର ।
୫ । ମଦ୍ୟପାନକାଳରେ ଭକ୍ଷଣୀୟ ଦ୍ରବ୍ୟକୁ ଅବଦଂଶ କହି ।
୬ । ଶୁଣ୍ଡାପାନ । ମଦସ୍ଥାନ ଏ ଦୁଇନାମ ମଦପାନ ସ୍ଥାନର ।
୭ । ମଧୁବାର । ମଧୁକ୍ରମ ଏ ଦୁଇନାମ ପୁନଃ ପୁନଃ ମଦ୍ୟପାୟୀ ବ୍ୟକ୍ତିର ।
୮ । ମଧ୍ୱାସବ । ମାଧବକ । ମଧୁ । ମାଧ୍ୱୀକ ଏ ଚାରିନାମ ପୁଷ୍ପମଧୁର ।
୯ । ମୈରେୟ । ଆସବ । ଶୀଧୁ । ମେଦକ । ଜଗଳ ଏ ପାଞ୍ଚନାମ ମଦଭେଦର ।
୧୦ । ସନ୍ଧାନ । ଅଭିଷବ ଏ ଦୁଇନାମ ମଦ ସନ୍ଧାନର ।
୧୧ । କିଣ୍ୱ । ନଗ୍ନହୂ ଏ ଦୁଇନାମ ନାନାଦ୍ରବ୍ୟକୃତ ସୁରାବୀଜ ଅର୍ଥାତ୍ ବାଖରର ।

[୧] କାରୋତ୍ତରଃ ସୁରାମଣ୍ଡ [୨] ଆପାନଂ ପାନଗୋଷ୍ଠିକା ।
[୩] ଚଷକୋଽସ୍ତ୍ରୀ ପାନପାତ୍ରଂ ସରକୋଽପ୍ୟନୁତର୍ଷଣଂ ॥
[୪] ଧୂର୍ତ୍ତୋଽକ୍ଷଦେବୀ କିତବୋଽକ୍ଷଧୂର୍ତ୍ତୋ ଦ୍ୟୂତକୃତ୍ସମାଃ ।
[୫] ସ୍ୟୁର୍ଲଗ୍ନକାଃ ପ୍ରତିଭୁବଃ [୬] ସଭିକା ଦ୍ୟୂତକାରକାଃ ॥
[୭] ଦ୍ୟୂତୋଽସ୍ତ୍ରିୟାମକ୍ଷବତୀ କୈତବଂ ପଣ ଇତ୍ୟପି ।
[୮] ପଣୋଽକ୍ଷେଷୁ ଗ୍ଲହୋ [୯] ଽକ୍ଷାସ୍ତୁ ଦେବନାଃ ପାଶକାଶ୍ଚ ତେ ॥
[୧୦] ପରିଣାୟସ୍ତୁ ଶାରୀଣାଂ ସମନ୍ତାନ୍ନୟନେ [୧୧] ଽସ୍ତ୍ରିୟାଂ ।
ଅଷ୍ଟାପଦଂ ଶାରିଫଳଂ [୧୨] ପ୍ରାଣିଦ୍ୟୂତଂ ସମାହ୍ୱୟଃ ॥
ଉକ୍ତା ଭୂରିପ୍ରୟୋଗତ୍ୱାଦେକସ୍ମିନ୍ ଯେଽତ୍ର ଯୌଗିକାଃ ।
ତାଦର୍ଥ୍ୟାଦନ୍ୟତୋ ବୃତ୍ତାବୂହ୍ୟା ଲିଙ୍ଗାନ୍ତରେଽପି ତେ ॥
ଇତ୍ୟମରସିଂହକୃତୌ ନାମଲିଙ୍ଗାନୁଶାସନେ ।
ଭୂମ୍ୟାଦି ଦ୍ୱିତୀୟଃ କାଣ୍ଡଃ ସାଙ୍ଗ ଏବ ସମର୍ଥିତଃ ॥

---

୧ । କାରୋତ୍ତର । ସୁରାମଣ୍ଡ ଏ ଦୁଇ ନାମ ସୁରାଅଗ୍ରଭାଗର ।
୨ । ଆପାନ । ପାନଗୋଷ୍ଠିକା ଏ ଦୁଇ ନାମ ଅନେକ ଲୋକ ଏକତ୍ର ପାନ କରିବା ସ୍ଥାନର ।
୩ । ଚଷକ । ପାନପାତ୍ର । ସରକ । ଅନୁତର୍ଷଣ ଏ ଚାରି ନାମ ମଦ୍ୟପାନ ପାତ୍ରର ।
୪ । ଧୂର୍ତ୍ତ । ଅକ୍ଷଦେବୀନ୍ । କିତବ । ଅକ୍ଷଧୂର୍ତ୍ତ । ଦ୍ୟୂତକୃତ୍ ଏ ପାଞ୍ଚ ନାମ ଜୁଆଡ଼ର ।
୫ । ଲଗ୍ନକ । ପ୍ରତିଭୂ ଏ ଦୁଇ ନାମ ଜାମିନର ।
୬ । ସଭିକ । ଦ୍ୟୂତକାରକ ଏ ଦୁଇ ନାମ ଦ୍ୟୂତପୋଷକର ।
୭ । ଦ୍ୟୂତ । ଅକ୍ଷବତୀ । କୈତବ । ପଣ ଏ ଚାରି ନାମ ଦ୍ୟୂତକ୍ରୀଡ଼ାର ।
୮ । ଦ୍ୟୂତକ୍ରୀଡ଼ାର ପଣକୁ ଗ୍ଲହ କହି ।
୯ । ଅକ୍ଷ । ଦେବନ । ପାଶକ ଏ ତିନି ନାମ ପଶାଖେଳର ।
୧୦ । ପଶାଖେଳରେ ଗୋଟି ଚଳିବାକୁ ପରିଣାୟ କହି ।
୧୧ । ଅଷ୍ଟାପଦ । ଶାରିଫଳ ଏ ଦୁଇନାମ ପଶା ପାଲିର ।
୧୨ । ପ୍ରାଣିଦ୍ୟୂତ । ସମାହ୍ୱୟ ଏ ଦୁଇନାମ ମେଷାଦି ଯୁଦ୍ଧରୂପ ଦ୍ୟୂତକ୍ରୀଡ଼ାର ।

# ପ୍ରାଣିବର୍ଗଃ ।

ବିଶେଷ୍ୟନିଘ୍ନୈଃ ସଙ୍କୀର୍ଣ୍ଣୈର୍ନାନାର୍ଥୈରବ୍ୟୟୈରପି ।
ଲିଙ୍ଗାଦି ସଂଗ୍ରହୈର୍ବର୍ଗାଃ ସାମାନ୍ୟେ ବର୍ଗ ସଂଶ୍ରୟାଃ ॥
ସ୍ତ୍ରୀ ଦାରାଦ୍ୟୈର୍ୟଦ୍ବିଶେଷ୍ୟଂ ଯାଦୃଶୈଃ ପ୍ରସ୍ତୁତଂ ପଦୈଃ ।
ଗୁଣଦ୍ରବ୍ୟ କ୍ରିୟାଶବ୍ଦାସ୍ତଥା ସ୍ୟୁସ୍ତସ୍ୟ ଭେଦକାଃ ॥

[୧] ସୁକୃତି ପୁଣ୍ୟବାନ୍ ଧନ୍ୟୋ [୨] ମହେଚ୍ଛସ୍ତୁ ମହାଶୟଃ ।
[୩] ହୃଦୟାଳୁଃ ସୁହୃଦୟୋ [୪] ମହୋତ୍ସାହୋ ମହୋଦ୍ୟମଃ ॥
[୫] ପ୍ରବୀଣେ ନିପୁଣାଭିଜ୍ଞ ବିଜ୍ଞ ନିଷ୍ଣାତ ଶିକ୍ଷିତାଃ ।
ବୈଜ୍ଞାନିକଃ କୃତମୁଖଃ କୃତୀ କୁଶଳ ଇତ୍ୟପି ॥
[୬] ପୂଜ୍ୟଃ ପ୍ରତୀକ୍ଷ୍ୟଃ [୭] ସାଂଶୟିକଃ ସଂଶୟାପନ୍ନମାନସଃ ।
[୮] ଦକ୍ଷିଣୀୟୋ ଦକ୍ଷିଣାର୍ହସ୍ତତ୍ର ଦକ୍ଷିଣ୍ୟ ଇତ୍ୟପି ॥
[୯] ସ୍ୟାଦ୍ବଦାନ୍ୟ ସ୍ଥୂଳଲକ୍ଷ୍ୟ ଦାନଶୌଣ୍ଡୋ ବହୁପ୍ରଦେ ।

---

୧ । ସୁକୃତିନ୍ । ପୁଣ୍ୟବତ୍ । ଧନ୍ୟ ଏ ତିନିନାମ ପୁଣ୍ୟବାନର ।
୨ । ମହେଚ୍ଛ । ମହାଶୟ ଏ ଦୁଇନାମ ମହାଶୟର ।
୩ । ହୃଦୟାଳୁ । ସୁହୃଦୟ ଏ ଦୁଇନାମ ପ୍ରସନ୍ନମନାର ।
୪ । ମହୋତ୍ସାହ । ମହୋଦ୍ୟମ ଏ ଦୁଇନାମ ଉଦ୍ୟୋଗୀର ।
୫ । ପ୍ରବୀଣ । ନିପୁଣ । ଅଭିଜ୍ଞ । ବିଜ୍ଞ । ନିଷ୍ଣାତ । ଶିକ୍ଷିତ । ବୈଜ୍ଞାନିକ । କୃତମୁଖ । କୃତିନ୍ । କୁଶଳ ଏ ଦଶନାମ କର୍ମକୁଶଳୀ ବ୍ୟକ୍ତିର ।
୬ । ପୂଜ୍ୟ । ପ୍ରତୀକ୍ଷ୍ୟ ଏ ଦୁଇନାମ ପୂଜନୀୟର ।
୭ । ସାଂଶୟିକ । ସଂଶୟାପନ୍ନମାନସ ଏ ଦୁଇନାମ ସଂଶୟଯୁକ୍ତର ।
୮ । ଦକ୍ଷିଣୀୟ । ଦକ୍ଷିଣାର୍ହ । ଦାକ୍ଷିଣ୍ୟ ଏ ତିନିନାମ ଦକ୍ଷିଣାଯୋଗ୍ୟର ।
୯ । ବଦାନ୍ୟ । ସ୍ଥୂଳଲକ୍ଷ୍ୟ । ଦାନଶୌଣ୍ଡ । ବହୁପ୍ରଦ ଏ ଚାରିନାମ ବହୁଦାତାର ।

[୧] ଜୈବାତୃକଃ ସ୍ୟାଦାୟୁଷ୍ମା [୨] ନନ୍ତର୍ବାଣିସ୍ତୁ ଶାସ୍ତ୍ରବିତ୍ ॥
[୩] ପରୀକ୍ଷକଃ କାରଣିକୋ [୪] ବରଦସ୍ତୁ ସମର୍ଦ୍ଧକଃ ।
[୫] ହର୍ଷମାଣୋ ବିକୁର୍ବାଣଃ ପ୍ରମନା ହୃଷ୍ଟମାନସଃ ॥
[୬] ଦୁର୍ମ୍ମନା ବିମନା ଅନ୍ତର୍ମ୍ମନାଃ ସ୍ୟା [୭] ଦୁତ୍କ ଉନ୍ମନାଃ ।
[୮] ଦକ୍ଷିଣେ ସରଳୋଦାରୌ [୯] ସୁକଲୋ ଦାତୃଭୋକ୍ତରି ॥
[୧୦] ତତ୍ପରେ ପ୍ରସିତାସକ୍ତା [୧୧] ବିଷ୍ଟାର୍ଥୋଦ୍ୟୁକ୍ତ ଉତ୍ସୁକଃ ॥
[୧୨] ପ୍ରତୀତେ ପ୍ରଥିତ ଖ୍ୟାତ ବିତ୍ତ ବିଜ୍ଞାତ ବିଶ୍ରୁତାଃ ॥
[୧୩] ଗୁଣୈଃ ପ୍ରତୀତେ ତୁ କୃତଲକ୍ଷଣାହତଲକ୍ଷଣୌ ।
[୧୪] ଇଭ୍ୟ ଆଢ୍ୟୋ ଧନୀ [୧୫] ସ୍ୱାମୀ ତ୍ୱୀଶ୍ୱରଃ ପତୀରୀଶିତା ॥
ଅଧିଭୂର୍ନାୟକୋ ନେତା ପ୍ରଭୁଃ ପରିବୃଢୋ଼ଽଧିପଃ ।

---

୧ । ଜୈବାତୃକ । ଆୟୁଷ୍ମତ୍ ଏ ଦୁଇନାମ ଦୀର୍ଘାୟୁର ।
୨ । ଅନ୍ତର୍ବାଣି । ଶାସ୍ତ୍ରବିଦ୍ ଏ ଦୁଇନାମ ଶାସ୍ତ୍ରବେତ୍ତାର ।
୩ । ପରୀକ୍ଷକ । କାରଣିକ ଏ ଦୁଇନାମ ନିରୂପଣକର୍ତ୍ତାର ।
୪ । ବରଦ । ସମର୍ଦ୍ଧକ ଏ ଦୁଇନାମ ବରଦାତାର ।
୫ । ହର୍ଷମାଣ । ବିକୁର୍ବାଣ । ପ୍ରମନସ୍, ହୃଷ୍ଟମାନସ ଏ ଚାରିନାମ ହୃଷ୍ଟମନସ୍କବ୍ୟକ୍ତିର ।
୬ । ଦୁର୍ମନସ୍ । ବିମନସ୍ । ଅନ୍ତର୍ମନସ୍ ଏ ତିନିନାମ ବିଷଣ୍ଣବ୍ୟକ୍ତିର ।
୭ । ଉତ୍କ । ଉନ୍ମନସ୍ ଏ ଦୁଇନାମ ଉତ୍କଣ୍ଠିତବ୍ୟକ୍ତିର ।
୮ । ଦକ୍ଷିଣ । ସରଳ । ଉଦାର ଏ ତିନିନାମ ଉଦାରସ୍ୱଭାବ ବ୍ୟକ୍ତିର ।
୯ । ଦାତା ଭୋକ୍ତା ଦୁହିଙ୍କି ସୁକଳ କହି ।
୧୦ । ପ୍ରସିତ । ଆସକ୍ତ ଏ ଦୁଇନାମ କାର୍ଯ୍ୟାସକ୍ତ ବ୍ୟକ୍ତିର ।
୧୧ । ଇଷ୍ଟାର୍ଥୋଦ୍ୟୁକ୍ତ । ଉତ୍ସୁକ ଏ ଦୁଇନାମ ଅଭିଳାଷ ବଶତଃ କୃତୋଦ୍ୟମ ବ୍ୟକ୍ତିର ।
୧୨ । ପ୍ରତୀତ । ପ୍ରଥିତ । ଖ୍ୟାତ । ବିତ୍ତ । ବିଜ୍ଞାତ । ବିଶ୍ରୁତ ଏ ଛନାମ ଖ୍ୟାତର ।
୧୩ । କୃତଲକ୍ଷଣ । ଆହତଲକ୍ଷଣ ଏ ଦୁଇନାମ ଗୁଣଦ୍ୱାରା ଖ୍ୟାତବ୍ୟକ୍ତିର ।
୧୪ । ଇଭ୍ୟ । ଆଢ୍ୟ । ଧନିନ୍ ଏ ତିନିନାମ ଧନୀବ୍ୟକ୍ତିର ।
୧୫ । ସ୍ୱାମିନ୍ । ଈଶ୍ୱର । ପତି । ଈଶିତୃ । ଅଧିଭୂ । ନାୟକ । ନେତୃ । ପ୍ରଭୁ । ପରିବୃଢ । ଅଧିପ ଏ ଦଶନାମ ସ୍ୱାମୀର ।

[୧] ଅଧିକର୍ଦ୍ଧିଃ ସମୃଦ୍ଧଃ ସ୍ୟାତ୍ [୨] କୁଟୁମ୍ବବ୍ୟାପୃତସ୍ତୁ ଯଃ ।
ସ୍ୟାଦଭ୍ୟାଗାରିକସ୍ତସ୍ମିନ୍ନୁପାଧିଶ୍ଚ ପୁମାନୟଂ ।

[୩] ବରାଙ୍ଗରୂପୋପେତୋ ଯଃ ସିଂହସଂହନନୋ ହି ସଃ ।

[୪] ନିର୍ବାର୍ଯ୍ୟଃ କାର୍ଯ୍ୟକର୍ତ୍ତା ଯଃ ସମ୍ପନ୍ନଃ ସତ୍ତ୍ୱସମ୍ପଦା ।

[୫] ଅବାଚି ମୂକୋ [୬] ଽଥ ମନୋଜବସଃ ପିତୃସନ୍ନିଭଃ ।

[୭] ସତ୍କୃତ୍ୟାଲଙ୍କୃତାଂ କନ୍ୟା ଯୋ ଦଦାତି ସ କୂକୁଦଃ ।

[୮] ଲକ୍ଷ୍ମୀବାନ୍ ଲକ୍ଷ୍ମଣଃ ଶ୍ରୀଳଃ ଶ୍ରୀମାନ୍ [୯] ସ୍ନିଗ୍ଧସ୍ତୁ ବତ୍ସଳଃ ।

[୧୦] ସ୍ୟାଦ୍ଦୟାଳୁଃ କାରୁଣିକଃ କୃପାଳୁଃ ସୂରତଃ ସମାଃ ।

[୧୧] ସ୍ୱତନ୍ତ୍ରୋଽପାବୃତଃ ସ୍ୱୈରୀ ସ୍ୱଚ୍ଛନ୍ଦୋ ନିରବଗ୍ରହଃ ।

[୧୨] ପରତନ୍ତ୍ରଃ ପରାଧୀନଃ ପରବାନ୍ନାଥବାନପି ।
ଅଧୀନୋ ନିଘ୍ନ ଆୟତ୍ତୋଽସ୍ୱଚ୍ଛନ୍ଦୋ ଗୃହ୍ୟକୋଽପ୍ୟସୌ ।

---

୧ । ଅଧିକର୍ଦ୍ଧି । ସମୃଦ୍ଧ ଏ ଦୁଇନାମ ଅତ୍ୟନ୍ତ ସମ୍ପତ୍ତିଯୁକ୍ତ ବ୍ୟକ୍ତିର ।

୨ । କୁଟୁମ୍ବବ୍ୟାପୃତ । ଅଭ୍ୟାଗାରିକ । ଉପାଧି ଏ ତିନିନାମ କୁଟୁମ୍ବକାର୍ଯ୍ୟାସକ୍ତ ବ୍ୟକ୍ତିର

୩ । ଉତ୍ତମାଙ୍ଗ ଗଠନଯୁକ୍ତ ବ୍ୟକ୍ତିକି ସିଂହସଂହନନ କହି ।

୪ । ନିର୍ଭୟ କାର୍ଯ୍ୟକର୍ତ୍ତାକୁ ନିର୍ବାର୍ଯ୍ୟ କହି ।

୫ । ଅବାଚ । ମୂକ ଏ ଦୁଇନାମ ମୁଙ୍ଗାର ।

୬ । ମନୋଜବସ୍ । ପିତୃସନ୍ନିଭ ଏ ଦୁଇନାମ ପିତୃତୁଲ୍ୟ ବ୍ୟକ୍ତିର ।

୭ । ପୂଜାପୂର୍ବକ ଅଲଂକୃତା କନ୍ୟାଦାତାକୁ କୂକୁଦ କହି ।

୮ । ଲକ୍ଷ୍ମୀବତ୍ । ଲକ୍ଷ୍ମଣ । ଶ୍ରୀଳ । ଶ୍ରୀମତ୍ ଏ ଚାରିନାମ ଲକ୍ଷ୍ମୀଯୁକ୍ତ ବ୍ୟକ୍ତିର ।

୯ । ସ୍ନିଗ୍ଧ । ବତ୍ସଳ ଏ ଦୁଇନାମ ସ୍ନେହକାରିକର ।

୧୦ । ଦୟାଳୁ । କାରୁଣିକ । କୃପାଳୁ । ସୂରତ ଏ ଚାରିନାମ ଦୟାଯୁକ୍ତ ବ୍ୟକ୍ତିର ।

୧୧ । ସ୍ୱତନ୍ତ୍ର । ଅପାବୃତ । ସ୍ୱୈରିନ୍ । ସ୍ୱଚ୍ଛନ୍ଦ । ନିରବଗ୍ରହ ଏ ପାଞ୍ଚନାମ ସ୍ୱାଧୀନ ବ୍ୟକ୍ତିର

୧୨ । ପରତନ୍ତ୍ର । ପରାଧୀନ । ପରବତ୍ । ନାଥବତ୍ । ଅଧୀନ । ନିଘ୍ନ । ଆୟତ୍ତ । ଅସ୍ୱଚ୍ଛନ୍ଦ । ଗୃହ୍ୟକ ଏ ନବନାମ ପରାଧୀନ ବ୍ୟକ୍ତିର ।

[୧] ଖଳପୂଃ ସ୍ୟାଦ୍‌ବହୁକରୋ [୨] ଦୀର୍ଘସୂତ୍ରଶ୍ଚିରକ୍ରିୟଃ ।
[୩] ଜାଲ୍ମୋଽସମୀକ୍ଷ୍ୟକାରୀ ସ୍ୟାତ୍ [୪] କୁଣ୍ଠୋ ମନ୍ଦଃ କ୍ରିୟାସୁ ଯଃ ।
[୫] କର୍ମକ୍ଷମୋଽଲଂକର୍ମୀଣଃ [୬] କ୍ରିୟାବାନ୍ କର୍ମସୂଦ୍ୟତଃ ।
[୭] ସ କାର୍ମଃ କର୍ମଶୀଳୋ ଯଃ [୮] କର୍ମଶୂରସ୍ତୁ କର୍ମଠଃ ॥
[୯] ଭରଣ୍ୟଭୁକ୍ କର୍ମକରଃ [୧୦] କର୍ମକାରସ୍ତୁ ତତ୍କ୍ରିୟଃ ।
[୧୧] ଅପସ୍ନାତୋ ମୃତସ୍ନାତ [୧୨] ଆମିଷାଶୀ ତୁ ଶୌକଲଃ ॥
[୧୩] ବୁଭୁକ୍ଷିତଃ ସ୍ୟାତ୍ କ୍ଷୁଧିତୋ ଜିଘତ୍ସୁରଶନାୟିତଃ ।
[୧୪] ପରାନ୍ନଃ ପରପିଣ୍ଡାଦୋ [୧୫] ଭକ୍ଷକୋ ଘସ୍ମରୋଽଦ୍ମରଃ ॥
[୧୬] ଆଦ୍ୟୂନଃ ସ୍ୟାଦୌଦରିକୋ ବିଜିଗୀଷାବିବର୍ଜିତେ ।
[୧୭] ଉଭାବାତ୍ମମ୍ଭରିଃ କୁକ୍ଷିମ୍ଭରିଃ ସ୍ୱୋଦରପୂରକେ ॥

---

୧ । ଖଳପୂ । ବହୁକର ଏ ଦୁଇନାମ ସମସ୍ତଙ୍କ କ୍ରିୟାକାରୀ ବ୍ୟକ୍ତିର ।
୨ । ଦୀର୍ଘସୂତ୍ର । ଚିରକ୍ରିୟ ଏ ଦୁଇନାମ ବିଳମ୍ବରେ କାର୍ଯ୍ୟକରିବା ଲୋକର ।
୩ । ଜାଲ୍ମ । ଅସମୀକ୍ଷକାରିନ୍ ଏ ଦୁଇନାମ ଅବିଚାର୍ଯ୍ୟ କାର୍ଯ୍ୟକରିବା ଲୋକର ।
୪ । ମନ୍ଦକ୍ରିୟାକାରୀ ବ୍ୟକ୍ତିର କୁଣ୍ଠ କହି ।
୫ । କର୍ମକ୍ଷମ । ଅଳଂକର୍ମୀଣ ଏ ଦୁଇନାମ କର୍ମକ୍ଷମ ବ୍ୟକ୍ତିର ।
୬ । କ୍ରିୟାବତ୍ । କର୍ମସୂଦ୍ୟତ ଏ ଦୁଇନାମ ଦକ୍ଷ-କର୍ମ ଉଦ୍ୟୋଗିର ।
୭ । କାର୍ମ । କର୍ମଶୀଳ ଏ ଦୁଇନାମ କର୍ମଶୀଳ ବ୍ୟକ୍ତିର ।
୮ । କର୍ମଶୂର । କର୍ମଠ ଏ ଦୁଇନାମ କର୍ମନିପୁଣ ବ୍ୟକ୍ତିର ।
୯ । ଭରଣ୍ୟଭୁକ୍ । କର୍ମକର ଏ ଦୁଇନାମ ବେତନଭୋଗୀ କର୍ମକର୍ତ୍ତାର ।
୧୦ । କର୍ମକାର । ତତ୍କ୍ରିୟ ଏ ଦୁଇନାମ ଅବେତନକ କର୍ମକାରର ।
୧୧ । ଅପସ୍ନାତ । ମୃତସ୍ନାତ ଏ ଦୁଇନାମ ମୃତୋଦ୍ଦେଶେ ସ୍ନାନକର୍ତ୍ତାର ।
୧୨ । ଆମିଷାଶିନ୍ । ଶୌକଲ ଏ ଦୁଇନାମ ଆମିଷଭୋକ୍ତାର ।
୧୩ । ବୁଭୁକ୍ଷିତ । କ୍ଷୁଧିତ । ଜିଘତ୍ସୁ । ଅଶନାୟିତ ଏ ଚାରିନାମ କ୍ଷୁଧିତବ୍ୟକ୍ତିର ।
୧୪ । ପରାନ୍ନ । ପରପିଣ୍ଡାଦ ଏ ଦୁଇନାମ ପରାନ୍ନୋପଜୀବୀର ।
୧୫ । ଭକ୍ଷକ । ଘସ୍ମର । ଅଦ୍ମର ଏ ତିନିନାମ ଭୋଜନଲୋଭୀ ବ୍ୟକ୍ତିର ।
୧୬ । ଆଦ୍ୟୂନ । ଔଦରିକ ଏ ଦୁଇନାମ ଉଦରପରିପୋଷକ ବ୍ୟକ୍ତିର ।
୧୭ । ଆତ୍ମମ୍ଭରି । କୁକ୍ଷିମ୍ଭରି ଏ ଦୁଇନାମ ନିଜାପଣାର ଉଦର ପରିପୋଷକର ।

[୧] ସର୍ବାନ୍ନୀନସ୍ତୁ ସର୍ବାନ୍ନଭୋଜୀ [୨] ଗୃଧ୍ନୁସ୍ତୁ ଗର୍ଦ୍ଧନଃ ।
ଲୁବ୍ଧୋଽଭିଲାଷୁକସ୍ତୃଷ୍ଣକ୍ [୩] ସମୌ ଲୋଲୁପ ଲୋଲୁଭୌ ॥
[୪] ଉନ୍ମଦସ୍ତୂନ୍ମଦିଷ୍ଣୁଃ ସ୍ୟା [୫] ଦବନୀତଃ ସମୁଦ୍ଧତଃ ।
[୬] ମତ୍ତେ ଶୌଣ୍ଡୋତ୍କଟକ୍ଷୀବାଃ [୭] କାମୁକେ କମିତାନୁକଃ ॥
କମ୍ରଃ କାମୟିତାଭୀକଃ କମନଃ କାମନୋଽଭିକଃ ।
[୮] ବିଧେୟୋ ବିନୟଗ୍ରାହୀ ବଚନେସ୍ଥିତ ଆଶ୍ରବଃ ।
[୯] ବଶ୍ୟଃ ପ୍ରଣେୟୋ [୧୦] ନିଭୃତ ବିନୀତ ପ୍ରଶ୍ରିତାଃ ସମାଃ ।
[୧୧] ଧୃଷ୍ଟେ ଧୃଷ୍ଣଗ୍ ବିୟାତଶ୍ଚ [୧୨] ପ୍ରଗଲ୍ଭଃ ପ୍ରତିଭାନ୍ୱିତଃ ।
[୧୩] ସ୍ୟାଦଧୃଷ୍ଟେ ତୁ ଶାଲୀନୋ [୧୪] ବିଲକ୍ଷୋ ବିସ୍ମୟାନ୍ୱିତେ ॥
[୧୫] ଅଧୀରେ କାତର [୧୬] ସ୍ତ୍ରସ୍ତେ ଭୀରୁ ଭୀରୁକ ଭୀଲୁକାଃ ॥

---

୧ । ସର୍ବାନ୍ନୀନ । ସର୍ବାନ୍ନଭୋଜିନ୍ ଏ ଦୁଇନାମ ସକଳବର୍ଣ୍ଣର ଅନ୍ନଖାଇବା ବ୍ୟକ୍ତିର ।
୨ । ଗୃଧ୍ନୁ । ଗର୍ଦ୍ଧନ । ଲୁବ୍ଧ । ଅଭିଲାଷୁକ । ତୃଷ୍ଣଜ ଏ ପାଞ୍ଚନାମ ଲୋଭୀବ୍ୟକ୍ତିର ।
୩ । ଲୋଲୁପ । ଲୋଲୁଭ ଏ ଦୁଇନାମ ଅତ୍ୟନ୍ତ ଲୋଭୀ ବ୍ୟକ୍ତିର ।
୪ । ଉନ୍ମଦ । ଉନ୍ମଦିଷ୍ଣୁ ଏ ଦୁଇନାମ ଉନ୍ମଦଯୁକ୍ତ ବ୍ୟକ୍ତିର ।
୫ । ଅବିନୀତ । ସମୁଦ୍ଧତ ଏ ଦୁଇନାମ ଉଦ୍ଧତବ୍ୟକ୍ତିର ।
୬ । ମତ୍ତ । ଶୌଣ୍ଡ । ଉତ୍କଟ । କ୍ଷୀବ ଏ ଚାରିନାମ ମଦମତ୍ତ ବ୍ୟକ୍ତିର ।
୭ । କାମୁକ । କମିତୃ । ଅନୁକ । କମ୍ର । କାମୟିତୃ । ଅଭୀକ । କମନ । କାମନ । ଅଭିକ ଏ ନବନାମ କାମୁକବ୍ୟକ୍ତିର ।
୮ । ବିଧେୟ । ବିନୟଗ୍ରାହିନ୍ । ବଚନେସ୍ଥିତ । ଆଶ୍ରବ ଏ ଚାରିନାମ ବଚନଗ୍ରହଣକାରୀ ବ୍ୟକ୍ତିର ।
୯ । ବଶ୍ୟ । ପ୍ରଣେୟ ଏ ଦୁଇନାମ ବଶୀଭୂତ ବ୍ୟକ୍ତିର ।
୧୦ । ନିଭୃତ । ବିନୀତ । ପ୍ରଶ୍ରିତ ଏ ତିନିନାମ ବିନୟକର୍ତ୍ତାର ।
୧୧ । ଧୃଷ୍ଟ । ଧୃଷ୍ଣଜ । ବିୟାତ ଏ ତିନିନାମ ଲଜ୍ଜାହୀନ ବ୍ୟକ୍ତିର ।
୧୨ । ପ୍ରଗଲ୍ଭ । ପ୍ରତିଭାନ୍ୱିତ ଏ ଦୁଇନାମ ପ୍ରତିଭାଯୁକ୍ତ ବ୍ୟକ୍ତିର ।
୧୩ । ଅଧୃଷ୍ଟ । ଶାଲୀନ ଏ ଦୁଇନାମ ଲଜ୍ଜାଯୁକ୍ତ ବ୍ୟକ୍ତିର ।
୧୪ । ବିଲକ୍ଷ । ବିସ୍ମୟାନ୍ୱିତ ଏ ଦୁଇନାମ ବିସ୍ମୟଯୁକ୍ତର ।
୧୫ । ଅଧୀର । କାତର ଏ ଦୁଇନାମ ଅଧୈର୍ଯ୍ୟ ବ୍ୟକ୍ତିର ।
୧୬ । ତ୍ରସ୍ତ । ଭୀରୁ । ଭୀରୁକ । ଭୀଲୁକ ଏ ଚାରିନାମ ଭୟଯୁକ୍ତ ବ୍ୟକ୍ତିର ।

[୧] ଆଶଂସୁସ୍ତ୍ୱାଶଂସିତରି [୨] ଗୃହୟାଳୁର୍ଗ୍ରହୀତରି ।
[୩] ଶ୍ରଦ୍ଧାଳୁଃ ଶ୍ରଦ୍ଧୟା ଯୁକ୍ତେ [୪] ପତୟାଳୁସ୍ତୁ ପାତୁକଃ ।
[୫] ଲଜ୍ଜାଶୀଳେଽପତ୍ରପିଷ୍ଣୁ [୬] ର୍ବନ୍ଦାରୁରଭିବାଦକେ ।
[୭] ଶରାରୁର୍ଘାତୁକୋ ହିଂସ୍ରଃ [୮] ସ୍ୟାଦ୍ବର୍ଦ୍ଧିଷ୍ଣୁସ୍ତୁ ବର୍ଦ୍ଧନଃ ।
[୯] ଉତ୍ପତିଷ୍ଣୁସ୍ତୂତ୍ପତିତା [୧୦] ଽଲଙ୍କରିଷ୍ଣୁସ୍ତୁ ମଣ୍ଡନଃ ।
[୧୧] ଭୂଷ୍ଣୁର୍ଭବିଷ୍ଣୁର୍ଭବିତା [୧୨] ବର୍ତ୍ତିଷ୍ଣୁର୍ବର୍ତ୍ତନଃ ସମୌ ।
[୧୩] ନିରାକରିଷ୍ଣୁଃ କ୍ଷିପ୍ନୁଃ ସ୍ୟାତ୍ [୧୪] ସାନ୍ଦ୍ରସ୍ନିଗ୍ଧସ୍ତୁ ମେଦୁରଃ ।
[୧୫] ଜ୍ଞାତା ତୁ ବିଦୁରୋ ବିନ୍ଦୁ [୧୬] ର୍ବିକାଶୀ ତୁ ବିକସ୍ୱରଃ ।
[୧୭] ବିସୃତ୍ୱରୋ ବିସୃମରଃ ପ୍ରସାରୀ ଚ ବିସାରିଣି ॥

---

୧ । ଆଶୀର୍ବାଦକାରୀବ୍ୟକ୍ତିର ଆଶଂସୁ ନାମ ।
୨ । ଗୃହୟାଳୁ । ଗ୍ରହୀତା ଏ ଦୁଇନାମ ଗ୍ରହଣଶୀଳ ବ୍ୟକ୍ତିର ।
୩ । ଶ୍ରଦ୍ଧାଯୁକ୍ତ ବ୍ୟକ୍ତିର ନାମ ଶ୍ରଦ୍ଧାଳୁ ।
୪ । ପତୟାଳୁ । ପାତୁକ ଏ ଦୁଇନାମ ପତନଶୀଳର ।
୫ । ଲଜ୍ଜାଶୀଳ । ଅପତ୍ରପିଷ୍ଣୁ ଏ ଦୁଇନାମ ଲଜ୍ଜାଶୀଳ ବ୍ୟକ୍ତିର ।
୬ । ବନ୍ଦାରୁ । ଅଭିବାଦକ ଏ ଦୁଇନାମ ପାଦଗ୍ରହଣପୂର୍ବକ ପ୍ରଣାମକାରୀର ।
୭ । ଶରାରୁ । ଘାତୁକ । ହିଂସ୍ର ଏ ତିନିନାମ ହିଂସାଶୀଳ ବ୍ୟକ୍ତିର ।
୮ । ବର୍ଦ୍ଧିଷ୍ଣୁ । ବର୍ଦ୍ଧନ ଏ ଦୁଇନାମ ବୃଦ୍ଧିଶୀଳ ବ୍ୟକ୍ତିର ।
୯ । ଉତ୍ପତିଷ୍ଣୁ । ଉତ୍ପତିତୃ ଏ ଦୁଇନାମ ଊର୍ଦ୍ଧ୍ୱପତନଶୀଳ ବ୍ୟକ୍ତିର ।
୧୦ । ଅଲଙ୍କରିଷ୍ଣୁ । ମଣ୍ଡନ ଏ ଦୁଇନାମ ଅଳଙ୍କରଣଶୀଳ ବ୍ୟକ୍ତିର ।
୧୧ । ଭୂଷ୍ଣୁ । ଭବିଷ୍ଣୁ । ଭବିତୃ ଏ ତିନିନାମ ସାଧୁଭବନଶୀଳ ବ୍ୟକ୍ତିର ।
୧୨ । ବର୍ତ୍ତିଷ୍ଣୁ । ବର୍ତ୍ତନ ଏ ଦୁଇନାମ ସାଧୁବୃତ୍ତିଶୀଳବ୍ୟକ୍ତିର ।
୧୩ । ନିରାକରିଷ୍ଣୁ । କ୍ଷିପ୍ନୁ ଏ ଦୁଇନାମ ନିରାକରଣଶୀଳ ବ୍ୟକ୍ତିର ।
୧୪ । ସାନ୍ଦ୍ରସ୍ନିଗ୍ଧ । ମେଦୁର ଏ ଦୁଇନାମ ଅତିଶୟସ୍ନିଗ୍ଧର ।
୧୫ । ଜ୍ଞାତୃ । ବିଦୁର । ବିନ୍ଦୁ ଏ ତିନିନାମ ଜ୍ଞାନକର୍ତ୍ତାର ।
୧୬ । ପ୍ରକାଶଶୀଳ ବ୍ୟକ୍ତିର ନାମ ବିକାଶିନ୍ ।
୧୭ । ବିସୃତ୍ୱର । ବିସୃମର । ପ୍ରସାରିନ୍ । ବିସାରିନ୍ ଏ ଚାରିନାମ ବିସ୍ତରଣଶୀଳ ବ୍ୟକ୍ତିର ।

[୧] ସହିଷ୍ଣୁଃ ସହନଃ କ୍ଷନ୍ତା ତିତିକ୍ଷୁଃ କ୍ଷମିତା କ୍ଷମୀ ॥
[୨] କ୍ରୋଧନୋଽମର୍ଷଣଃ କୋପୀ [୩] ଚଣ୍ଡସ୍ତ୍ୱତ୍ୟନ୍ତକୋପନଃ ।
[୪] ଜାଗରୂକୋ ଜାଗରିତା [୫] ଘୂର୍ଣ୍ଣିତଃ ପ୍ରଚଳାୟିତଃ ॥
[୬] ସ୍ୱପ୍ନକ୍ ଶୟାଳୁର୍ନିଦ୍ରାଳୁ [୭] ର୍ନିଦ୍ରାଣ ଶୟିତୌ ସମୌ ।
[୮] ପରାଙ୍ମୁଖଃ ପରାଚୀନଃ [୯] ସ୍ୟାଦବାଙପ୍ୟଧୋମୁଖଃ ॥
[୧୦] ଦେବାନଞ୍ଚତି ଦେବଦ୍ର୍ୟଙ୍ [୧୧] ବିଷ୍ୱଦ୍ର୍ୟଙ୍ ବିଷ୍ୱଗଞ୍ଚତି ।
[୧୨] ଯଃ ସହାଞ୍ଚତି ସଧ୍ର୍ୟଙ୍ ସ [୧୩] ତିର୍ଯ୍ୟଙ୍ ଯସ୍ତିର୍ଯ୍ୟଗଞ୍ଚତି ॥
[୧୪] ବଦୋ ବଦାବଦୋ ବକ୍ତା [୧୫] ବାଗୀଶୋ ବାକ୍ପତିଃ ସମୌ
[୧୬] ବାଚୋଯୁକ୍ତିପଟୁର୍ବାଗ୍ମୀ ବାବଦୂକୋଽତିବକ୍ତରି ॥
[୧୭] ସ୍ୟାଜ୍ଜଳ୍ପାକସ୍ତୁ ବାଚାଳୋ ବାଚାଟୋ ବହୁଗର୍ହ୍ୟବାକ୍ ।

---

୧ । ସହିଷ୍ଣୁ । ସହନ । କ୍ଷନ୍ତା । ତିତିକ୍ଷୁ । କ୍ଷମିତୃ । କ୍ଷମିନ୍ ଏ ଛଅ ନାମ ସହନଶୀଳ ବ୍ୟକ୍ତିର

୨ । କ୍ରୋଧନ । ଅମର୍ଷଣ । କୋପିନ୍ ଏ ତିନି ନାମ କ୍ରୋଧଶୀଳ ବ୍ୟକ୍ତିର ।

୩ । ଚଣ୍ଡ । ଅତ୍ୟନ୍ତକୋପନ ଏ ଦୁଇ ନାମ ଅତ୍ୟନ୍ତକ୍ରୋଧଯୁକ୍ତ ବ୍ୟକ୍ତିର ।

୪ । ଜାଗରୂକ । ଜାଗରିତୃ ଏ ଦୁଇ ନାମ ଜାଗରଣଶୀଳ ବ୍ୟକ୍ତିର ।

୫ । ଘୂର୍ଣ୍ଣିତ । ପ୍ରଚଳାୟିତ ଏ ଦୁଇ ନାମ ନିଦ୍ରାଦ୍ୱାରା ଘୂର୍ଣ୍ଣିତ ବ୍ୟକ୍ତିର ।

୬ । ସ୍ୱପ୍ନଜ୍ । ଶୟାଳୁ । ନିଦ୍ରାଳୁ ଏ ତିନି ନାମ ନିଦ୍ରାଶୀଳ ବ୍ୟକ୍ତିର ।

୭ । ନିଦ୍ରାଣ । ଶୟିତ ଏ ଦୁଇ ନାମ ନିଦ୍ରିତ ବ୍ୟକ୍ତିର ।

୮ । ପରାଙ୍ମୁଖ । ପରାଚୀନ ଏ ଦୁଇ ନାମ ସତ୍କର୍ମରେ ବିମୁଖ ବ୍ୟକ୍ତିର ।

୯ । ଅବାଚ୍ । ଅଧୋମୁଖ ଏ ଦୁଇ ନାମ ସତ୍କର୍ମରେ ଅଧୋମୁଖ ବ୍ୟକ୍ତିର ।

୧୦ । ଦେବପୂଜକ ବ୍ୟକ୍ତିକି ଦେବଦ୍ର୍ୟଚ୍ କହି ।

୧୧ । ସର୍ବତ୍ର ଗମନକାରୀ ବ୍ୟକ୍ତିକି ବିଷ୍ୱଦ୍ର୍ୟଚ୍ କହି ।

୧୨ । ସହିତ ଗମନକର୍ତ୍ତାକୁ ସଧ୍ର୍ୟଚ୍ କହି

୧୩ । ତିର୍ଯ୍ୟକ୍ ଦେହରେ ଗମନକର୍ତ୍ତାକୁ ତିର୍ଯ୍ୟଚ୍ କହି ।

୧୪ । ବଦ । ବଦାବଦ । ବକ୍ତୃ ଏ ତିନି ନାମ ବକ୍ତାର ।

୧୫ । ବାଗୀଶ । ବାକ୍ପତି ଏ ଦୁଇ ନାମ ବୁଦ୍ଧି ଦ୍ୱାରା ବାକ୍ୟରଚକର ।

୧୬ । ବାଚୋଯୁକ୍ତିପଟୁ । ବାଗ୍ମିନ୍ । ବାବଦୂକ । ଅତିବକ୍ତୃ ଏ ଚାରିନାମ ବାକ୍ପଟୁ ବ୍ୟକ୍ତିର ।

୧୭ । ଜଳ୍ପାକ । ବାଚାଳ । ବାଚାଟ ବହୁଗର୍ହ୍ୟବାଚ୍ ଏ ଚାରିନାମ ନିନ୍ଦିତବହୁବାକ୍ୟବାଦୀର।

[୧] ଦୁର୍ମ୍ମୁଖେ ମୁଖରାବଦ୍ଧମୁଖୌ [୨] ଶକ୍ଳଃ ପ୍ରିୟମ୍ବଦେ ।
[୩] ଲୋହଲଃ ସ୍ୟାଦସ୍ଫୁଟବାଗ୍ [୪] ଗର୍ହ୍ୟବାଦୀ ତୁ କଦ୍‌ବଦଃ ।
[୫] ସମୌ କୁବାଦ କୁଚରୌ [୬] ସ୍ୟାଦସୌମ୍ୟସ୍ୱରୋଽସ୍ୱରଃ ।
[୭] ରବଣଃ ଶବ୍ଦନୋ [୮] ନାନ୍ଦୀ ବାଦୀ ନାନ୍ଦୀକରଃ ସମୌ ।
[୯] ଜଡୋଽଜ୍ଞ [୧୦] ଏଡମୂକସ୍ତୁ ବକ୍ତୁଂ ଶ୍ରୋତୁମଶିକ୍ଷିତେ ।
[୧୧] ତୂଷ୍ଣୀଂଶୀଳସ୍ତୁ ତୂଷ୍ଣୀକୋ [୧୨] ନଗ୍ନୋଽବାସା ଦିଗମ୍ବରେ ।
[୧୩] ନିଷ୍କାସିତୋଽବକୃଷ୍ଟଃ ସ୍ୟା [୧୪] ଦପଧ୍ୱସ୍ତସ୍ତୁ ଧିକ୍କୃତଃ ।
[୧୫] ଆତ୍ତଗର୍ବୋଽଭିଭୂତଃ ସ୍ୟା [୧୬] ଦାପିତଃ ସାଧିତଃ ସମୌ ।
[୧୭] ପ୍ରତ୍ୟାଦିଷ୍ଟୋ ନିରସ୍ତଃ ସ୍ୟାତ୍ ପ୍ରତ୍ୟାଖ୍ୟାତୋ ନିରାକୃତଃ ।

---

୧ । ଦୁର୍ମୁଖ । ମୁଖର ଅବଦ୍ଧମୁଖ ଏ ତିନିନାମ ଅପ୍ରିୟବକ୍ତାର ।
୨ । ଶକ୍ଳ । ପ୍ରିୟମ୍ବଦ ଏ ଦୁଇନାମ ପ୍ରିୟବକ୍ତାର ।
୩ । ଲୋହଲ । ଅସ୍ଫୁଟବାକ ଏ ଦୁଇନାମ ଅପ୍ରକାଶିତ ବାକ୍ୟବକ୍ତାର ।
୪ । ଗର୍ହ୍ୟବାଦିନ୍ । କଦ୍ବଦ ଏ ଦୁଇନାମ କୁତ୍ସିତବାକ୍ୟ ବକ୍ତାର ।
୫ । କୁବାଦ । କୁଚର ଏ ଦୁଇନାମ ପରର ପରିବାଦବକ୍ତାର ।
୬ । ଅସୌମ୍ୟସ୍ୱର । ଅସ୍ୱର ଏ ଦୁଇନାମ ଦୁଷ୍ଟସ୍ୱର ବକ୍ତାର ।
୭ । ରବଣ । ଶବ୍ଦନ ଏ ଦୁଇନାମ ଶବ୍ଦଯୁକ୍ତ ବ୍ୟକ୍ତିର ।
୮ । ନାନ୍ଦୀବାଦିନ୍ । ନାନ୍ଦୀକର ଏ ଦୁଇନାମ ମଙ୍ଗଳଯୁକ୍ତ ସ୍ତୁତିପାଠକ ବ୍ୟକ୍ତିର ।
୯ । ଜଡ । ଅଜ୍ଞ ଏ ଦୁଇନାମ ଜଡ଼ବ୍ୟକ୍ତିର ।
୧୦ । କହିବା ଶୁଣିବା ଅଶିକ୍ଷିତ ବ୍ୟକ୍ତିକି ଏଡମୂକ କହି ।
୧୧ । ତୂଷ୍ଣୀଶୀଳ । ତୂଷ୍ଣୀକ ଏ ଦୁଇନାମ ମୌନ ବ୍ୟକ୍ତିର ।
୧୨ । ନଗ୍ନ । ଅବାସସ୍ । ଦିଗମ୍ବର ଏ ତିନିନାମ ଲଙ୍ଗଳାର ।
୧୩ । ନିଷ୍କାସିତ । ଅବକୃଷ୍ଟ ଏ ଦୁଇନାମ ବହିଷ୍କୃତ ବ୍ୟକ୍ତିର ।
୧୪ । ଅପଧ୍ୱସ୍ତ । ଧିକ୍କୃତ ଏ ଦୁଇନାମ କୃତଧିକ୍କାର ବ୍ୟକ୍ତିର ।
୧୫ । ଆତ୍ତଗର୍ବ । ଅଭିଭୂତ ଏ ଦୁଇନାମ ତିରସ୍କାରଯୁକ୍ତ ବ୍ୟକ୍ତିର ।
୧୬ । ଦାପିତ । ସାଧିତ ଏ ଦୁଇନାମ ସାଧିତ ବ୍ୟକ୍ତିର ।
୧୭ । ପ୍ରତ୍ୟାଦିଷ୍ଟ । ନିରସ୍ତ । ପ୍ରତ୍ୟାଖ୍ୟାତ । ନିରାକୃତ ଏ ଚାରିନାମ ନିରାକୃତ ବ୍ୟକ୍ତିର ।

[୧] ନିକୃତଃ ସ୍ୟାଦ୍ ବିପ୍ରକୃତୋ [୨] ବିପ୍ରଲବ୍ଧସ୍ତୁ ବଞ୍ଚିତଃ ।
[୩] ମନୋହତଃ ପ୍ରତିହତଃ ପ୍ରତିବଦ୍ଧୋ ହତଶ୍ଚ ସଃ ।
[୪] ଅଧିକ୍ଷିପ୍ତଃ ପ୍ରତିକ୍ଷିପ୍ତୋ [୫] ବଦ୍ଧେ କୀଲିତ ସଂଯତୌ ।
[୬] ଆପନ୍ନ ଆପତ୍ପ୍ରାପ୍ତଃ ସ୍ୟାତ୍ [୭] କାନ୍ଦିଶୀକୋ ଭୟଦ୍ରୁତଃ ।
[୮] ଆକ୍ଷାରିତଃ କ୍ଷାରିତୋଽଭିଶସ୍ତେ [୯] ସଂକସୁକୋଽସ୍ଥିରେ ।
[୧୦] ବ୍ୟସନାର୍ତ୍ତୋପରକ୍ତୌ ଦ୍ୱୌ [୧୧] ବିହସ୍ତ ବ୍ୟାକୁଲୌ ସମୌ
[୧୨] ବିକ୍ଳବୋ ବିହ୍ୱଳଃ [୧୩] ସ୍ୟାତ୍ତୁ ବିବଶୋଽରିଷ୍ଟଦୁଷ୍ଟଧୀଃ ।
[୧୪] କଶ୍ୟଃ କଶାର୍ହେ [୧୫] ସନ୍ନଦ୍ଧେ ତ୍ୱାତତାୟୀ ବଧୋଦ୍ୟତେ ।
[୧୬] ଦ୍ୱେଷ୍ୟେ ତ୍ୱକ୍ଷିଗତୋ [୧୭] ବଧ୍ୟଃ ଶୀର୍ଷଚ୍ଛେଦ୍ୟ ଇମୌ ସମୌ ।

---

୧ । ନିକୃତ । ବିପ୍ରକୃତ ଏ ଦୁଇନାମ ତିରସ୍କୃତ ବ୍ୟକ୍ତିର ।
୨ । ବିପ୍ରଲବ୍ଧ । ବଞ୍ଚିତ ଏ ଦୁଇନାମ ବଞ୍ଚିତବ୍ୟକ୍ତିର ।
୩ । ମନୋହତ । ପ୍ରତିହତ । ପ୍ରତିବଦ୍ଧ । ହତ ଏ ଚାରିନାମ ହତବ୍ୟକ୍ତିର ।
୪ । ଅଧିକ୍ଷିପ୍ତ । ପ୍ରତିକ୍ଷିପ୍ତ ଏ ଦୁଇନାମ ନିନ୍ଦିତବ୍ୟକ୍ତିର ।
୫ । ବଦ୍ଧ । କୀଲିତ । ସଂଯତ ଏ ତିନିନାମ ବଦ୍ଧବ୍ୟକ୍ତିର ।
୬ । ଆପନ୍ନ । ଆପତ୍ପ୍ରାପ୍ତ ଏ ଦୁଇନାମ ଆପଦ୍‌ଗତ ବ୍ୟକ୍ତିର ।
୭ । କାନ୍ଦିଶୀକ । ଭୟଦ୍ରୁତ ଏ ଦୁଇନାମ ଭୟରୁ ପଳାଇବା ବ୍ୟକ୍ତିର ।
୮ । ଆକ୍ଷାରିତ । କ୍ଷାରିତ । ଅଭିଶସ୍ତ ଏ ତିନିନାମ ମିଥ୍ୟାବାକ୍ୟଦ୍ୱାରା ଦୂଷିତବ୍ୟକ୍ତିର ।
୯ । ସଂକସୁକ । ଅସ୍ଥିର ଏ ଦୁଇନାମ ଅସ୍ଥିର ବ୍ୟକ୍ତିର ।
୧୦ । ବ୍ୟସନାର୍ତ୍ତ । ଉପରକ୍ତ ଏ ଦୁଇନାମ କାମକ୍ରୋଧ ପୀଡିତ ବ୍ୟକ୍ତିର ।
୧୧ । ବିହସ୍ତ । ବ୍ୟାକୁଳ ଏ ଦୁଇନାମ ବ୍ୟାକୁଳ ବ୍ୟକ୍ତିର ।
୧୨ । ବିକ୍ଳବ । ବିହ୍ୱଳ ଏ ଦୁଇନାମ ଭୟବିହ୍ୱଳ ବ୍ୟକ୍ତିର ।
୧୩ । ବିବଶ । ଅରିଷ୍ଟଦୁଷ୍ଟଧୀ ଏ ଦୁଇନାମ ଦୁଷ୍ଟବୁଦ୍ଧି ବ୍ୟକ୍ତିର ।
୧୪ । କଶ୍ୟ । କଶାର୍ହ ଏ ଦୁଇନାମ ବେତ୍ରାଘାତଯୋଗ୍ୟ ବ୍ୟକ୍ତିର ।
୧୫ । ସନ୍ନଦ୍ଧ । ଆତତାୟିନ୍ । ବଧୋଦ୍ୟତ । ଏ ତିନିନାମ କୃତସନ୍ନାହ ଯୋଦ୍ଧ୍ୟତ ବ୍ୟକ୍ତିର ।
୧୬ । ଦ୍ୱେଷ୍ୟ । ଅକ୍ଷିଗତ ଏ ଦୁଇନାମ ଦ୍ୱେଷ୍ୟବ୍ୟକ୍ତିର ।
୧୭ । ବଧ୍ୟ । ଶୀର୍ଷଚ୍ଛେଦ୍ୟ ଏ ଦୁଇନାମ ବଧ୍ୟବ୍ୟକ୍ତିର ।

[୧] କଶ୍ୟୋ କଶେଣ ଯୋ ବଧ୍ୟୋ [୨] ମୁଷଲ୍ୟୋ ମୁଷଲେନ ଯଃ
[୩] ଶିଶ୍ୱିଦାନୋଽକୃଷ୍ଣକର୍ମା । [୪] ଚପଲଶ୍ଚିକୁରଃ ସମୌ ।
[୫] ଦୋଷୈକଦୃକ୍ ପୁରୋଭାଗୀ [୬] ନିକୃତସ୍ତ୍ୱନୃଜୁ ଶଠଃ ॥
[୭] କର୍ଣ୍ଣେଜପଃ ସୂଚକଃ ସ୍ୟାତ୍ ପିଶୁନୋ ଦୁର୍ଜନଃ ଖଳଃ ।
[୮] ନୃଶଂସୋ ଘାତୁକଃ କ୍ରୂରଃ ପାପୋ [୯] ଧୂର୍ତ୍ତସ୍ତୁ ବଞ୍ଚକଃ ॥
[୧୦] ଅଜ୍ଞ ମୂଢ ଯଥାଜାତ ମୂର୍ଖ ବୈଧେୟ ବାଳିଶାଃ ।
[୧୧] କଦର୍ଯ୍ୟେ କୃପଣ କ୍ଷୁଦ୍ର କିମ୍ପଚାନ ମିତମ୍ପଚାଃ ॥
[୧୨] ନିଃସ୍ୱସ୍ତୁ ଦୁର୍ବିଧୋ ଦୀନୋ ଦରିଦ୍ରୋ ଦୁର୍ଗତୋଽପି ସଃ ।
[୧୩] ବନୀୟକୋ ଯାଚନକୋ ମାର୍ଗଣୋ ଯାଚକାର୍ଥିନୌ ॥
[୧୪] ଅହଙ୍କାରବାନହଂୟୁଃ ସ୍ୟାତ୍ [୧୫] ଶୁଭଂୟୁସ୍ତୁ ଶୁଭାନ୍ୱିତଃ ।

---

୧ । କଶଦ୍ୱାର ବଧ୍ୟବ୍ୟକ୍ତିର ନାମ କହ ।
୨ । ମୂଷଳଦ୍ୱାର ବଧ୍ୟବ୍ୟକ୍ତିର ମୂଷଳ୍ୟ କହ ।
୩ । ଶିଶ୍ୱିଦାନ । ଅକୃଷ୍ଣକର୍ମନ୍ ଏ ଦୁଇନାମ ଅମଳିନ କର୍ମକାରୀ ବ୍ୟକ୍ତିର ।
୪ । ଚପଳ । ଚିକୁର ଏ ଦୁଇନାମ ଚଞ୍ଚଳବ୍ୟକ୍ତିର ।
୫ । ଦୋଷୈକଦୃଶ୍ । ପୁରୋଭାଗିନ୍ ଏ ଦୁଇନାମ ଗୁଣ ଛାଡ଼ିଥାଇକରଦୋଷଗ୍ରାହୀ ବ୍ୟକ୍ତିର
୬ । ନିକୃତ । ଅନୃଜୁ । ଶଠ ଏ ତିନିନାମ ପ୍ରତାରକ ବ୍ୟକ୍ତିର ।
୭ । କର୍ଣ୍ଣେଜପ । ସୂଚକ । ପିଶୁନ । ଦୁର୍ଜ୍ଜନ । ଖଳ ଏ ପାଞ୍ଚନାମ ଖଳର ।
୮ । ନୃଶଂସ । ଘାତୁକ । କ୍ରୂର । ପାପ ଏ ଚାରିନାମ କ୍ରୂରବ୍ୟକ୍ତିର ।
୯ । ଧୂର୍ତ୍ତ । ବଞ୍ଚକ ଏ ଦୁଇନାମ ବଞ୍ଚକବ୍ୟକ୍ତିର ।
୧୦ । ଅଜ୍ଞ । ମୂଢ଼ । ଯଥାଜାତ । ମୂର୍ଖ । ବୈଧେୟ । ବାଳିଶ ଏ ଛନାମ ମୂର୍ଖର ।
୧୧ । କଦର୍ଯ୍ୟ । କୃପଣ । କ୍ଷୁଦ୍ର । କିମ୍ପଚାନ ଏ ପାଞ୍ଚନାମ କୃପଣର ।
୧୨ । ନିଃସ୍ୱ । ଦୁର୍ବିଧ । ଦୀନ । ଦରିଦ୍ର । ଦୁର୍ଗତ ଏ ପାଞ୍ଚନାମ ଦରିଦ୍ରର ।
୧୩ । ବନୀୟକ । ଯାଚନକ । ମାର୍ଗଣ । ଯାଚକ । ଅର୍ଥିନ୍ ଏ ପାଞ୍ଚନାମ ମାଗିବାବ୍ୟକ୍ତିର
୧୪ । ଅହଙ୍କାରବତ୍ । ଅହଂୟୁ ଏ ଦୁଇନାମ ଅହଙ୍କାରୀ ବ୍ୟକ୍ତିର ।
୧୫ । ଶୁଭଂୟୁ । ଶୁଭାନ୍ୱିତ ଏ ଦୁଇନାମ ଶୁଭଯୁକ୍ତ ବ୍ୟକ୍ତିର ।

[୧] ଦେବ୍ୟୋପପାଦୁକା ଦେବା [୨] ନୃ-ଗବାଦ୍ୟା ଜରାୟୁଜାଃ ।
[୩] ସ୍ୱେଦଜାଃ କୃମିଦଂଶାଦ୍ୟାଃ [୪] ପକ୍ଷିସର୍ପାଦୟୋ ଽଣ୍ଡଜାଃ ।

---

## ବିଶେଷ୍ୟନିଘ୍ନବର୍ଗଃ ।

[୧] ଉଦ୍ଭିଦସ୍ତରୁଗୁଲ୍ମାଦ୍ୟା ଉଦ୍ଭିଦୁଦ୍ଭିଜ୍ଜମୁଦ୍ଭିଦଂ ।
[୨] ସୁନ୍ଦରଂ ରୁଚିରଂ ଚାରୁ ସୁଷମଂ ସାଧୁ ଶୋଭନଂ ।
କାନ୍ତଂ ମନୋରମଂ ରୁଚ୍ୟଂ ମନୋଜ୍ଞଂ ମଞ୍ଜୁ ମଞ୍ଜୁଳଂ ।
[୩] ତଦାସେଚନକଂ ତୃପ୍ତେର୍ନାସ୍ତ୍ୟନ୍ତୋ ଯସ୍ୟ ଦର୍ଶନାତ୍ ।
[୪] ଅଭୀଷ୍ଟେଽଭୀପ୍ସିତଂ ହୃଦ୍ୟଂ ଦୟିତଂ ବଲ୍ଲଭଂ ପ୍ରିୟଂ ।
[୫] ନିକୃଷ୍ଟ ପ୍ରତିକୃଷ୍ଟାର୍ବରେଫଯାପ୍ୟାବମାଧମାଃ ।
କୁପୂୟ କୁତ୍ସିତାବଦ୍ୟ ଖେଟ ଗର୍ହ୍ୟାଣକାଃ ସମାଃ ।

---

୧ । ସ୍ୱନ୍ଦାସ୍ତ ଦେବତାଙ୍କ ଉପପାଦୁକ କହି ।
୨ । ମନୁଷ୍ୟ ଓ ଗବାଦିଙ୍କି ଜରାୟୁଜ କହି ।
୩ । କୃମି ଡାଂଶ ମାଛି ଆଦିଙ୍କି ସ୍ୱେଦଜ କହି ।
୪ । ପକ୍ଷି ସର୍ପ ଆଦିଙ୍କି ଅଣ୍ଡଜ କହି ।

---

### ବିଶେଷ୍ୟନିଘ୍ନବର୍ଗ ।

୧ । ଉଦ୍ଭିଦ । ଉଦ୍ଭିଜ୍ଜ । ଉଦ୍ଭିଦ ଏ ତିନିନାମ ବୃକ୍ଷଲତାଦିଙ୍କର ।
୨ । ସୁନ୍ଦର । ରୁଚିର । ଚାରୁ । ସୁଷମ । ସାଧୁ । ଶୋଭନ । କାନ୍ତ । ମନୋରମ ।
ରୁଚ୍ୟ । ମନୋଜ୍ଞ । ମଞ୍ଜୁ । ମଞ୍ଜୁଳ ଏ ବାରନାମ ସୁନ୍ଦରର ।
୩ । ଅନ୍ତତୃପ୍ତିକ ଅସେଚନକ କହି ।
୪ । ଅଭୀଷ୍ଟ । ଅଭୀପ୍ସିତ । ହୃଦ୍ୟ । ଦୟିତ । ବଲ୍ଲଭ । ପ୍ରିୟ ଏ ଛନାମ ଅଭୀଷ୍ଟର ।
୫ । ନିକୃଷ୍ଟ । ପ୍ରତିକୃଷ୍ଟ । ଅର୍ବନ୍ । ରେଫ । ଯାପ୍ୟ । ଅବମ । ଅଧମ । କୁପୂୟ ।
କୁତ୍ସିତ । ଅବଦ୍ୟ । ଖେଟ । ଗର୍ହ୍ୟ । ଅଣକ ଏ ତେର ନାମ ନିକୃଷ୍ଟର ।

[୧] ମଲୀମସଂ ତୁ ମଳିନଂ କଚ୍ଚରଂ ମଲଦୂଷିତଂ ॥
[୨] ପୂତଂ ପବିତ୍ରଂ ମେଧ୍ୟଂ ଚ [୩] ବୀଧ୍ରଂ ତୁ ବିମଲାତ୍ମକଂ ।
[୪] ନିର୍ଣ୍ଣିକ୍ତଂ ଶୋଧିତଂ ମୃଷ୍ଟଂ ନିଃଶୋଧ୍ୟମନବସ୍କରଂ ॥
[୫] ଅସାରଂ ଫଲ୍ଗୁ [୬] ଶୂନ୍ୟଂ ତୁ ବଶିକଂ ତୁଚ୍ଛ ରିକ୍ତକେ ।
[୭] କ୍ଲୀବେ ପ୍ରଧାନଂ ପ୍ରମୁଖ ପ୍ରବେକାନୁତ୍ତମୋତ୍ତମା ॥
ମୁଖ୍ୟ ବର୍ଯ୍ୟ ବରେଣ୍ୟାଶ୍ଚ ପ୍ରବର୍ହୋ ଽନବରାର୍ଦ୍ଧ୍ୟଂ ବତ୍ ।
ପରାର୍ଦ୍ଧ୍ୟାଗ୍ର୍ୟପ୍ରାଗ୍ରହର ପ୍ରାଗ୍ର୍ୟାଗ୍ର୍ୟା-ଗ୍ରୀୟମଗ୍ରିୟଂ ॥
[୮] ଶ୍ରେୟାନ୍ ଶ୍ରେଷ୍ଠଃ ପୁଷ୍କଲଃ ସ୍ୟାତ୍ ସତ୍ତମଶ୍ଚାତିଶୋଭନେ ।
[୯] ସ୍ୟୁରୁତ୍ତରପଦେ ବ୍ୟାଘ୍ର ପୁଙ୍ଗବର୍ଷଭ କୁଞ୍ଜରାଃ ॥
ସିଂହ ଶାର୍ଦ୍ଦୂଲ ନାଗାଦ୍ୟାଃ ପୁଂସି ଶ୍ରେଷ୍ଠାର୍ଥବାଚକାଃ ।
[୧୦] ଅପ୍ରାଗ୍ର୍ୟଂ ଦ୍ୱୟହୀନେ ଦ୍ୱେ ଅପ୍ରଧାନୋପସର୍ଜ୍ଜନେ ।

---

୧ । ମଲୀମସ । ମଳିନ । କଚ୍ଚର । ମଳଦୂଷିତ ଏ ଚାରିନାମ ମଳିନର ।

୨ । ପୂତ । ପବିତ୍ର । ମେଧ୍ୟ ଏ ତିନିନାମ ପବିତ୍ରର ।

୩ । ବୀଧ୍ର । ବିମଳାତ୍ମକ ଏ ଦୁଇନାମ ନିର୍ମଳର ।

୪ । ନିର୍ଣ୍ଣିକ୍ତ । ଶୋଧିତ । ମୃଷ୍ଟ । ନିଃଶୋଧ୍ୟ । ଅନବସ୍କର ଏ ପାଞ୍ଚନାମ ପ୍ରକ୍ଷାଳନାଦିଦ୍ୱାରା ଶୋଧିତ ଦ୍ରବ୍ୟର ।

୫ । ଅସାର ଫଲ୍ଗୁ ଏ ଦୁଇନାମ ଅସାରର ।

୬ । ଶୂନ୍ୟ । ବଶିକ । ତୁଚ୍ଛ । ରିକ୍ତକ ଏ ଚାରିନାମ ଗୁଣାଦିଶୂନ୍ୟ ବସ୍ତୁର ।

୭ । ପ୍ରଧାନ । ପ୍ରମୁଖ । ପ୍ରବେକ । ଅନୁତ୍ତମ । ଉତ୍ତମ । ମୁଖ୍ୟ । ବର୍ଯ୍ୟ । ବରେଣ୍ୟ । ପ୍ରବର୍ହ । ଅନବରାର୍ଦ୍ଧ୍ୟ । ପରାର୍ଦ୍ଧ୍ୟ । ଅଗ୍ର୍ୟ । ପ୍ରାଗ୍ରହର । ପ୍ରାଗ୍ର୍ୟ । ଅଗ୍ରୀୟ । ଅଗ୍ରିୟ । ଏ ସତରନାମ ପ୍ରଧାନର ।

୮ । ଶ୍ରେୟାନ୍ । ଶ୍ରେଷ୍ଠ । ପୁଷ୍କଳ । ସତ୍ତମ । ଅତିଶୋଭନ ଏ ପାଞ୍ଚନାମ ଅତିଶୋଭନ ବସ୍ତୁର ।

୯ । ବ୍ୟାଘ୍ର । ପୁଙ୍ଗବ । ଋଷଭ । କୁଞ୍ଜର । ସିଂହ । ଶାର୍ଦ୍ଦୂଳ । ନାଗ ଏ ସାତନାମ । ଉତ୍ତରପଦରେ ଥିଲେ ଶ୍ରେଷ୍ଠବାଚକର ଅର୍ଥାତ୍ ପ୍ରଧାନକୁ ବୁଝାଏ ।

୧୦ । ଅପ୍ରାଗ୍ର୍ୟ । ଅପ୍ରଧାନ । ଉପସର୍ଜନ ଏ ତିନିନାମ ଅପ୍ରଧାନର ।

[୧] ବିଶଙ୍କଟଂ ପୃଥୁ ବୃହଦ୍ ବିଶାଳଂ ପୃଥୁଳଂ ମହତ୍ ।
ବଡ୍ରୋରୁ ବିପୁଳଂ [୨] ପୀନ ପୀବ୍ନୀ ତୁ ସ୍ଥୂଳପୀବରେ ॥
[୩] ସ୍ତୋକାଳ୍ପ କ୍ଷୁଲ୍ଲକାଃ ସୂକ୍ଷ୍ମଂ ଶ୍ଳକ୍ଷ୍ଣଂ ଦଭ୍ରଂ କୃଶଂ ତନୁ ।
ସ୍ତ୍ରିୟାଂ ମାତ୍ରା ତ୍ରୁଟୀ ପୁଂସି ଲବ ଲେଶ କଣାଣବଃ ॥
[୪] ଅତ୍ୟଳ୍ପେ ଽଳ୍ପିଷ୍ଠମଳ୍ପୀୟଃ କଣୀୟୋ ଽଣୀୟ ଇତ୍ୟପି ।
[୫] ପ୍ରଭୂତଂ ପ୍ରଚୁରଂ ପ୍ରାଜ୍ୟମଦଭ୍ରଂ ବହୁଳଂ ବହୁ ॥
ପୁରୁହଂ ପୁରୁ ଭୂୟିଷ୍ଠଂ ସ୍ଫିରଂ ଭୂୟଶ୍ଚ ଭୂରି ଚ ।
[୬] ପରଃ ଶତାଦ୍ୟାସ୍ତେ ଯେଷାଂ ପରା ସଂଖ୍ୟା ଶତାଦିକାତ୍ ॥
[୭] ଗଣନୀୟେ ତୁ ଗଣେୟଂ [୮] ସଂଖ୍ୟାତେ ଗଣିତ [୯] ମଥ
ସମଂ ସର୍ବଂ ବିଶ୍ୱମଶେଷଂ କୃତ୍ସ୍ନଂ ସମସ୍ତ ନିଖିଳାଖିଳାନି ନିଃଶେଷଂ ॥
ସମଗ୍ରଂ ସକଳଂ ପୂର୍ଣ୍ଣମଖଣ୍ଡଂ ସ୍ୟାଦନୂନକେ ।

---

୧ । ବିଶଙ୍କଟ । ପୃଥୁ । ବୃହତ୍ । ବିଶାଳ । ପୃଥୁଳ । ମହତ୍ । ବଡ୍ର । ଉରୁ । ବିପୁଳ ଏ ନବନାମ ବୃହତର ।

୨ । ପୀନ । ପୀବନ୍ । ସ୍ଥୂଳ । ପୀବର ଏ ଚାରିନାମ ସ୍ଥୂଳ ଅର୍ଥାତ୍ ମୋଟାର ।

୩ । ସ୍ତୋକ । ଅଳ୍ପ । କ୍ଷୁଲ୍ଲକ । ସୂକ୍ଷ୍ମ । ଶ୍ଳକ୍ଷ୍ଣ । ଦଭ୍ର । କୃଶ । ତନୁ । ମାତ୍ରା । ତ୍ରୁଟି । ଲବ । ଲେଶ । କଣ । ଅଣୁ ଏ ଚଉଦନାମ ସୂକ୍ଷ୍ମର ।

୪ । ଅତ୍ୟଳ୍ପ । ଅଳ୍ପିଷ୍ଠ । ଅଳ୍ପୀୟସ୍ । କଣୀୟସ୍ । ଅଣୀୟସ ଏ ପାଞ୍ଚନାମ ଅତିଅଳ୍ପର ।

୫ । ପ୍ରଭୂତ । ପ୍ରଚୁର । ପ୍ରାଜ୍ୟ । ଅଦଭ୍ର । ବହୁଳ । ବହୁ । ପୁରୁହ । ପୁରୁ । ଭୂୟିଷ୍ଠ । ସ୍ଫିର । ଭୂୟସ୍ । ଭୂରି ଏ ବାରନାମ ପ୍ରଚୁରର ।

୬ । ପରଃଶତ । ପରଃସହସ୍ର । ପରୋଲକ୍ଷ ଏ ତିନିନାମ ଶତାଦିରୁ ଅଧିକ ସଂଖ୍ୟାର ।

୭ । ଗଣନୀୟ । ଗଣେୟ ଏ ଦୁଇନାମ ଗଣନାଯୋଗ୍ୟର ।

୮ । ସଂଖ୍ୟାତ । ଗଣିତ ଏ ଦୁଇନାମ କୃତଗଣନାର ।

୯ । ସମ । ସର୍ବ । ବିଶ୍ୱ । ଅଶେଷ । କୃତ୍ସ୍ନ । ସମସ୍ତ । ନିଖିଳ । ଅଖିଳ । ନିଃଶେଷ । ସମଗ୍ର । ସକଳ । ପୂର୍ଣ୍ଣ । ଅଖଣ୍ଡ । ଅନୂନକ ଏ ଚଉଦନାମ ସକଳର ।

[୧] ଘନଂ ନିରନ୍ତରଂ ସାନ୍ଦ୍ରଂ [୨] ପେଲବଂ ବିରଳଂ ତନୁଃ ।

[୩] ସମୀପେ ନିକଟାସନ୍ନଃ ସନ୍ନିକୃଷ୍ଟ ସନୀଡବତ୍ ।

ସଦେଶାଭ୍ୟାସ ସବିଧଃ ସମର୍ଯ୍ୟାଦ ସବେଶବତ୍ ॥

ଉପକଣ୍ଠାନ୍ତିକାଭ୍ୟର୍ଣ୍ଣାଭ୍ୟଗ୍ରାପ୍ୟଭିତୋ ଽବ୍ୟୟଂ ।

[୪] ସଂସକ୍ତେ ତ୍ୱବ୍ୟବହିତ ମପଦାନ୍ତରମିତ୍ୟପି ।

[୫] ନେଦିଷ୍ଠମନ୍ତିକତମଂ [୬] ସ୍ୟାଦ୍ଦୂରଂ ବିପ୍ରକୃଷ୍ଟକଂ ।

[୭] ଦବୀୟଶ୍ଚ ଦବିଷ୍ଠଂ ଚ ସୁଦୂରଂ [୮] ଦୀର୍ଘମାୟତଂ ।

[୯] ବର୍ତ୍ତୁଳଂ ନିସ୍ତଳଂ ବୃତ୍ତଂ [୧୦] ବନ୍ଧୁରଂ ତୂନ୍ନତାନତଂ ।

[୧୧] ଉଚ୍ଚ ପ୍ରାଂଶୂନ୍ନତୋଦଗ୍ରୋଚ୍ଛ୍ରିତା ସ୍ତୁଙ୍ଗେ [୧୨] ଽଥ ବାମନେ ।

ନ୍ୟଙ୍ନୀଚ ଖର୍ବ ହ୍ରସ୍ୱାଃ ସ୍ୟୁ [୧୩] ରବାଗ୍ରେ ଽବନତାନତଂ ।

---

୧ । ଘନ । ନିରନ୍ତର । ସାନ୍ଦ୍ର ଏ ତିନୋନାମ ନେଉ ।

୨ । ପେଲବ । ବିରଳ । ତନୁ ଏ ତିନିନାମ ବିରଳର ।

୩ । ସମୀପ । ନିକଟ । ଆସନ୍ନ । ସନ୍ନିକୃଷ୍ଟ । ସନୀଡ । ସଦେଶ । ଅଭ୍ୟାସ । ସବିଧ । ସମର୍ଯ୍ୟାଦ । ସବେଶ । ଉପକଣ୍ଠ । ଅନ୍ତିକ । ଅଭ୍ୟର୍ଣ୍ଣ । ଅଭ୍ୟଗ୍ର । ଅଭିତସ୍ ଏ ପନ୍ଦରନାମ ନିକଟର ।

୪ । ସଂସକ୍ତ । ଅବ୍ୟବହିତ । ଅପଦାନ୍ତର ଏ ତିନିନାମ ଅବ୍ୟବହିତର ।

୫ । ନେଦିଷ୍ଠ । ଅନ୍ତିକ ଏ ଦୁଇନାମ ଅତ୍ୟନ୍ତ ନିକଟର ।

୬ । ଦୂର । ବିପ୍ରକୃଷ୍ଟକ ଏ ଦୁଇନାମ ଦୂରର ।

୭ । ଦବୀୟସ୍ । ଦବିଷ୍ଠ । ସୁଦୂର ଏ ତିନିନାମ ଅତ୍ୟନ୍ତ ଦୂରର ।

୮ । ଦୀର୍ଘ । ଆୟତ ଏ ଦୁଇନାମ ଦୀର୍ଘର ।

୯ । ବର୍ତ୍ତୁଳ । ନିସ୍ତଳ । ବୃତ୍ତ ଏ ତିନିନାମ ବର୍ତ୍ତୁଳ ଅର୍ଥାତ୍ ଗୋଲାକୃତିର ।

୧୦ । ବନ୍ଧୁର । ଉନ୍ନତାନତ ଏ ଦୁଇନାମ ଉଚ୍ଚନୀଚର ।

୧୧ । ଉଚ୍ଚ । ପ୍ରାଂଶୁ । ଉନ୍ନତ । ଉଦଗ୍ର । ଉଚ୍ଛ୍ରିତ । ତୁଙ୍ଗ ଏ ଛଅନାମ ଉଚ୍ଚର ।

୧୨ । ନ୍ୟଚ୍ । ନୀଚ । ଖର୍ବ । ହ୍ରସ୍ୱ ଏ ଚାରିନାମ ବାମନର ।

୧୩ । ଅବାଗ୍ର । ଅବନତ । ଆନତ ଏ ତିନିନାମ ଅବନତର ।

[୧] ଅରାଳଂ ବୃଜିନଂ ଜିହ୍ମ ମୂର୍ମିମତ୍ କୁଞ୍ଚିତଂ ନତଂ ।
ଆବିଦ୍ଧଂ କୁଟିଳଂ ଭୁଗ୍ନଂ ବେଲ୍ଲିତଂ ବକ୍ରମିତ୍ୟପି ।
[୨] ଋଜାବଜିହ୍ମ ପ୍ରଗୁଣୌ [୩] ବ୍ୟସ୍ତେ ତ୍ୱପ୍ରଗୁଣାକୁଳୌ ।
[୪] ଶାଶ୍ୱତସ୍ତୁ ଧ୍ରୁବୋ ନିତ୍ୟ ସଦାତନ ସନାତନାଃ ।
[୫] ସ୍ଥାସ୍ନୁଃ ସ୍ଥିରତରଃ ସ୍ଥେୟା-[୬]-ନେକରୂପତୟା ତୁ ଯଃ ।
କାଳବ୍ୟାପୀ ସ କୂଟସ୍ଥଃ [୭] ସ୍ଥାବରୋ ଜଙ୍ଗମେତରଃ ।
[୮] ଚରିଷ୍ଣୁର୍ଜଙ୍ଗମଚର ତ୍ରସମିଙ୍ଗଂ ଚରାଚରଂ ।
[୯] ଚଳନଂ କମ୍ପନଂ କମ୍ପ୍ରଂ ଚଳଂ ଲୋଳଂ ଚଳାଚଳଂ ।
ଚଞ୍ଚଳଂ ତରଳଂ ଚୈବ ପାରିପ୍ଲବ ପରିପ୍ଲବେ ।
[୧୦] ଅତିରିକ୍ତଃ ସମଧିକୋ [୧୧] ଦୃଢସନ୍ଧିସ୍ତୁ ସଂହତଃ ।

---

୧ । ଅରାଳ । ବୃଜିନ । ଜିହ୍ମ । ଊର୍ମିମତ୍ । କୁଞ୍ଚିତ । ନତ । ଆବିଦ୍ଧ । କୁଟିଳ । ଭୁଗ୍ନ । ବେଲ୍ଲିତ । ବକ୍ର ଏ ଏଗାରନାମ କୁଟିଳର ।
୨ । ଋଜୁ । ଅଜିହ୍ମ । ପ୍ରଗୁଣ ଏ ତିନିନାମ ସରଳର ।
୩ । ବ୍ୟସ୍ତ । ଅପ୍ରଗୁଣ । ଆକୁଳ ଏ ତିନିନାମ ଆକୁଳର ।
୪ । ଶାଶ୍ୱତ । ଧ୍ରୁବ । ନିତ୍ୟ । ସଦାତନ । ସନାତନ ଏ ପାଞ୍ଚନାମ ନିତ୍ୟର ।
୫ । ସ୍ଥାସ୍ନୁ । ସ୍ଥିରତର । ସ୍ଥେୟସ ଏ ତିନିନାମ ସ୍ଥିରତରର ।
୬ । ଏକରୂପେ ଅନେକ କାଳ ବ୍ୟାପିବା କୂଟସ୍ଥ କହି ।
୭ । ଜଙ୍ଗମଭିନ୍ନକୁ ସ୍ଥାବର କହି ।
୮ । ଚରିଷ୍ଣୁ । ଜଙ୍ଗମ । ଚର । ତ୍ରସ । ଇଙ୍ଗ । ଚରାଚର ଏ ଛଅନାମ ଜଙ୍ଗମର ।
୯ । ଚଳନ । କମ୍ପନ । କମ୍ପ୍ର । ଚଳ । ଲୋଳ । ଚଳାଚଳ । ଚଞ୍ଚଳ । ତରଳ । ପାରିପ୍ଲବ । ପରିପ୍ଲବ ଏ ଦଶନାମ ଚଞ୍ଚଳର ।
୧୦ । ଅତିରିକ୍ତ । ସମଧିକ ଏ ଦୁଇନାମ ଅଧିକର ।
୧୧ । ଦୃଢସନ୍ଧି । ସଂହତ ଏ ଦୁଇନାମ ନିଶ୍ଛିଦ୍ରବସ୍ତୁର ।

ଥାନ୍ତାଃ ।

[୧] ଅର୍ଥୋ ଽଭିଧେୟରୈବସ୍ତୁ ପ୍ରୟୋଜନନିବୃତ୍ତିଷୁ ।
[୨] ନିପାନାଗମୟୋସ୍ତୀର୍ଥମୃଷିଜୁଷ୍ଟଜଳେ ଗୁରୌ ॥
[୩] ସମର୍ଥସ୍ତ୍ରିଷୁ ଶକ୍ତିସ୍ଥେ ସମ୍ବଦ୍ଧାର୍ଥେ ହିତେ ଽପି ଚ ।
[୪] ଦଶମୀସ୍ଥୌ କ୍ଷୀଣରାଗବୃଦ୍ଧୌ [୫] ବୀଥୀ ପଦବ୍ୟପି ।
[୬] ଆସ୍ଥାନୀଯତ୍ନୟୋରାସ୍ଥା [୭] ପ୍ରସ୍ଥୋ ଽସ୍ତ୍ରୀ ସାନୁମାନୟୋଃ ।

ଦାନ୍ତାଃ ।

[୧] ଅଭିପ୍ରାୟବଶୌ ଛନ୍ଦୌ [୨] ଅବ୍ଦୌ ଜୀମୂତବତ୍ସରୌ ।
[୩] ଅପବାଦୌ ତୁ ନିନ୍ଦାଜ୍ଞେ [୪] ଦାୟାଦୌ ସୁତବାନ୍ଧବୌ ।
[୫] ପାଦାରଶ୍ମ୍ୟଙ୍ଘ୍ରି ତୁର୍ଯ୍ୟାଂଶା [୬] ଶ୍ଚନ୍ଦ୍ରାଗ୍ନ୍ୟର୍କାସ୍ତମୋନୁଦଃ ।
[୭] ନିର୍ବାଦୋ ଜନବାଦେ ଽପି [୮] ଶାଦୋ ଜମ୍ବାଳଶଷ୍ପୟୋଃ ॥
[୯] ଆରବେ ରୁଦିତେ ତ୍ରାତର୍ଯ୍ୟାକ୍ରନ୍ଦୋ ଦାରୁଣେ ରଣେ ।

---

ଥାନ୍ତବର୍ଗଃ ।

୧ । ଅଭିଧେୟ । ଧନ । ବସ୍ତୁ । ପ୍ରୟୋଜନ । ନିବୃତ୍ତି । ଏମାନଙ୍କୁ ଅର୍ଥ କହି ।
୨ । ଜଳ ପିଇବା ସ୍ଥାନ । ଆଗମଶାସ୍ତ୍ର । ଋଷିସେବିତ ଜଳ । ଗୁରୁ ଏମାନଙ୍କୁ ତୀର୍ଥ କହି ।
୩ । ଅତଏବ ଶକ୍ତିଯୁକ୍ତ । ଯୁକ୍ତାର୍ଥ । ହିତ ଏମାନଙ୍କୁ ସମର୍ଥ କହି ।
୪ । କ୍ଷୀଣରାଗ । ବୃଦ୍ଧ ଏ ଦୁହିଙ୍କି ଦଶମୀସ୍ଥ କହି ।
୫ । ପଥକୁ ବୀଥୀ ବୋଲାଯାଏ । ୬ । ସଭା । ଯତ୍ନ ଏ ଦୁହିଙ୍କି ଆସ୍ଥା କହି ।
୭ । ପର୍ବତ ଏକପ୍ରଦେଶ । ପରିମାଣ ବିଶେଷ ଏ ଦୁହିଙ୍କି ପ୍ରସ୍ଥ କହି ।

ଦାନ୍ତବର୍ଗଃ ।

୧ । ଅଭିପ୍ରାୟ । ବଶ ଏ ଦୁହିଙ୍କି ଛନ୍ଦ କହି । ୨ । ମେଘ ବତ୍ସର ଏ ଦୁହିଙ୍କି ଅବ୍ଦ କହି ।
୩ । ନିନ୍ଦା । ଆଜ୍ଞା ଏ ଦୁହିଙ୍କି ଅପବାଦ କହି । ୪ । ପୁତ୍ର । ଜ୍ଞାତି ଏ ଦୁହିଙ୍କି ଦାୟାଦ କହି
୫ । କିରଣ । ଚରଣ । ଚତୁର୍ଥଭାଗ ଏମାନଙ୍କୁ ପାଦ କହି ।
୬ । ଚନ୍ଦ୍ର । ସୂର୍ଯ୍ୟ । ଅଗ୍ନି ଏମାନଙ୍କୁ ତମୋନୁଦ କହି ।
୭ । ଜନବାଦକୁ ନିର୍ବାଦ ବୋଲାଯାଏ । ୮ । ପଙ୍କ । ନବୀନତୃଣ ଏ ଦୁହିଙ୍କି ଶାଦ କହି ।
୯ । ଶବ୍ଦ । ରୋଦନ । ତ୍ରାତା । ଦାରୁଣ । ରଣ ଏମାନଙ୍କୁ ଆକ୍ରନ୍ଦ କହି ।

[୧] ସ୍ୟାତ୍ ପ୍ରସାଦୋଽନୁରୋଧେଽପି [୨] ସୂଦଃ ସ୍ୟାଦ୍ବ୍ୟଞ୍ଜନେଽପି ଚ
[୩] ଗୋଷ୍ଠାଧ୍ୟକ୍ଷେଽପି ଗୋବନ୍ଦୋ [୪] ହର୍ଷେ ଽପ୍ୟାମୋଦବନ୍ମଦଃ ।
[୫] ପ୍ରାଧାନ୍ୟେ ରାଜଲିଙ୍ଗେ ଚ ବୃଷାଙ୍ଗେ କକୁଦୋ ଽସ୍ତ୍ରିୟାଂ ।
[୬] ସ୍ତ୍ରୀ ସମ୍ବିଜ୍ଜ୍ଞାନସମ୍ଭାଷାକ୍ରିୟାକାରାଜିନାମସୁ ।
[୭] ଧର୍ମ୍ମେ ରହସ୍ୟୁପନିଷତ୍ [୮] ସ୍ୟାଦୃତୌ ବତ୍ସରେ ଶରତ୍ ।
[୯] ପଦଂ ବ୍ୟବସିତତ୍ରାଣସ୍ଥାନଲକ୍ଷ୍ମାଙ୍ଘ୍ରିବସ୍ତୁଷୁ ।
[୧୦] ଗୋଷ୍ପଦଂ ସେବିତେ ମାନେ [୧୧] ପ୍ରତିଷ୍ଠାକୃତ୍ୟମାସ୍ପଦଂ ।
[୧୨] ତ୍ରିଷ୍ୱିଷ୍ଟମଧୁରୌ ସ୍ୱାଦୂ [୧୩] ମୃଦୂ ଚାତୀକ୍ଷ୍ଣକୋମଲୌ ॥
[୧୪] ମୂଢାଲ୍ପାପଟୁନିର୍ଭାଗ୍ୟା ମନ୍ଦାଃ [୧୫] ସ୍ୟୁର୍ଦ୍ୱୌ ତୁ ଶାରଦୌ ।
[୧୬] ପ୍ରତ୍ୟଗ୍ରାପ୍ରତିଭୌ ବିଦ୍ୱତ୍ସୁପ୍ରଗଲ୍ଭୌ ବିଶାରଦୌ ।

---

୧ । ଅନୁରୋଧକୁ ପ୍ରସାଦ କହି । ୨ । ବ୍ୟଞ୍ଜନକୁ ସୂଦ କହି ।
୩ । ଗୋଷ୍ଠର ଅଧ୍ୟକ୍ଷକୁ ଗୋବନ୍ଦ କ । ୪ । ହର୍ଷ । ମତ୍ତତା ଏ ଦୁହିଙ୍କ ମଦ କହି ।
୫ । ପ୍ରାଧାନ୍ୟ । ରାଜଚିହ୍ନ । ଷଣ୍ଢର କୁବ୍ଜ ଏମାନଙ୍କୁ କକୁଦ କହି ।
୬ । ଜ୍ଞାନ । ସମ୍ଭାଷା । କ୍ରିୟା । ଅଙ୍ଗୀକାର । ଯୁଦ୍ଧ । ନାମ ଏମାନଙ୍କୁ ସମ୍ବିଦ କହି ।
୭ । ଧର୍ମ । ଏକାନ୍ତ ଏ ଦୁହିଙ୍କି ଉପନିଷଦ୍ କହି ।
୮ । ଋତୁବିଶେଷ । ବତ୍ସର ଏ ଦୁହିଙ୍କି ଶରତ୍ କ ।
୯ । ବ୍ୟବସାୟ । ଲକ୍ଷଣ । ସ୍ଥାନ । ଚିହ୍ନ । ଚରଣ । ବସ୍ତୁ ଏମାନଙ୍କୁ ପଦ କହି ।
୧୦ । ସେବିତ । ପରିମାଣ ଏ ଦୁହିଙ୍କି ଗୋଷ୍ପଦ କହି ।
୧୧ । ପ୍ରତିଷ୍ଠା । କାର୍ଯ୍ୟ ଏ ଦୁହିଙ୍କି ଆସ୍ପଦ କହି ।
୧୨ । କାମଳା । ମଧୁର ଏ ଦୁହିଙ୍କି ସ୍ୱାଦୁ କହି ।
୧୩ । ଅତୀକ୍ଷ୍ଣ । କୋମଳ ଏ ଦୁହିଙ୍କି ମୃଦୁ କହି ।
୧୪ । ମୂଢ଼ । ଅଳ୍ପ । ଅପଟୁ । ନିର୍ଭାଗ୍ୟ ଏମାନଙ୍କୁ ମନ୍ଦ କହି ।
୧୫ । ନବୀନ । ଅପ୍ରତିଭ ଏ ଦୁହିଙ୍କି ଶାରଦ କହି ।
୧୬ । ବିଦ୍ୱାନ୍ । ପ୍ରଗଲ୍ଭ ଏ ଦୁହିଙ୍କି ବିଶାରଦ କହି ।

ଧାନ୍ତାଃ ।

[୧] ବ୍ୟାମୋ ବଟଶ୍ଚ ନ୍ୟଗ୍ରୋଧୌ [୨] ଉତ୍ସେଧଃ କାୟ ଉନ୍ନତିଃ ।
[୩] ପର୍ଯ୍ୟାହାରଶ୍ଚ ମାର୍ଗଶ୍ଚ ବିବଧୌ ବୀବଧୌ ଚ ତୌ ॥
[୪] ପରିଧିର୍ଯଜ୍ଞିୟତରୋଃ ଶାଖାୟାମୁପସୂର୍ଯ୍ୟକେ ।
[୫] ବନ୍ଧକଂ ବ୍ୟସନଂ ଚେତଃପୀଡ଼ାଧିଷ୍ଠାନମାଧୟଃ ॥
[୬] ସ୍ୟୁଃ ସମର୍ଥନନୀବାକନିୟମାଶ୍ଚ ସମାଧୟଃ ।
[୭] ଦୋଷୋତ୍ପାଦେଽନୁବନ୍ଧଃ ସ୍ୟାତ୍ ପ୍ରକୃତ୍ୟାଦିବିନଶ୍ୱରେ
ମୁଖ୍ୟାନୁଯାୟିନି ଶିଶୌ ପ୍ରକୃତସ୍ୟାନୁବର୍ତ୍ତନେ ।
[୮] ବିଧୁର୍ବିଷ୍ଣୌ ଚନ୍ଦ୍ରମସି [୯] ପରିଚ୍ଛେଦେ ବିଲେଽବଧିଃ ॥
[୧୦] ବିଧିର୍ବିଧାନେ ଦୈବେ ଚ [୧୧] ପ୍ରଣିଧିଃ ପ୍ରାର୍ଥନେ ଚରେ ।
[୧୨] ବୁଧବୃଦ୍ଧୌ ପଣ୍ଡିତେଽପି [୧୩] ସ୍କନ୍ଧଃ ସମୁଦୟେଽପି ଚ ।

---

ଧାନ୍ତବର୍ଗଃ ।

୧ । ବ୍ୟାମ । ବଟବୃକ୍ଷ ଏ ଦୁହିଙ୍କି ନ୍ୟଗ୍ରୋଧ କହି ।
୨ । ଦେହ । ଉନ୍ନତ ଏ ଦୁହିଙ୍କି ଉତ୍ସେଧ କହି ।
୩ । ପର୍ଯ୍ୟାହାର । ପଥ ଏ ଦୁହିଙ୍କି ବିବଧ ଓ ବୀବଧ କହି ।
୪ । ଯଜ୍ଞୀୟ ବୃକ୍ଷର ଶାଖା । ସୂର୍ଯ୍ୟଙ୍କ ଚତୁର୍ଦ୍ଦିଗ ମଣ୍ଡଳ ଏ ଦୁହିଙ୍କି ପରିଧି କହି ।
୫ । ବନ୍ଧକ । ବ୍ୟସନ । ( ବିପଦ ) ମନଃପୀଡ଼ା ଅଧିଷ୍ଠାନ ଏମାନଙ୍କୁ ଆଧି କହି ।
୬ । ସମର୍ଥନ ( ସମାଧାନ ) ନିବାକ ( କଥା ନ କହିବା ) ନିୟମ ଏମାନଙ୍କୁ ସମାଧି କହି ।
୭ । ଦୋଷର ଉତ୍ପତ୍ତି । ପ୍ରକୃତ ଆଦି । ନଶ୍ୱର । ମୁଖ୍ୟବ୍ୟକ୍ତିର ଅନୁଗାମୀ । ଶିଶୁ ପ୍ରକୃତର
ଅନୁବର୍ତ୍ତନ ଏମାନଙ୍କୁ ଅନୁବନ୍ଧ କହି ।
୮ । ବିଷ୍ଣୁ । ଚନ୍ଦ୍ର ଏ ଦୁହିଙ୍କି ବିଧୁ କହି ।
୯ । ପରିଚ୍ଛେଦ ( ସୀମା ) ଗର୍ତ୍ତ ଏ ଦୁହିଙ୍କି ଅବଧି କହି ।
୧୦ । ବିଧାନ । ଦୈବ ଏ ଦୁହିଙ୍କି ବିଧି କହି ।
୧୧ । ପ୍ରାର୍ଥନା । ଚର ଏ ଦୁହିଙ୍କି ପ୍ରଣିଧି କହି ।
୧୨ । ପଣ୍ଡିତକୁ ବୁଧ ଓ ବୃଦ୍ଧ କୁହାଯାଏ ।   ୧୩ । ସମୁଦାୟକୁ ସ୍କନ୍ଧ କୁହାଯାଏ ।

[୧] ଦେଶେ ନଦବିଶେଷେ ଽବ୍ଧୌ ସିନ୍ଧୁର୍ନା ସରିତ ସ୍ତ୍ରିୟାଂ ।
[୨] ବିଧାବିଧୌ ପ୍ରକାରେ ଚ [୩] ସାଧୁ ରମ୍ୟେ ଽପିଚ ତ୍ରିଷୁ ॥
[୪] ବଧୂର୍ଜାୟା ସ୍ନୁଷା ସ୍ତ୍ରୀ ଚ [୫] ସୁଧାଲେପୋ ଽମୃତଂ ସ୍ନୁହୀ ।
[୬] ସନ୍ଧା ପ୍ରତିଜ୍ଞା ମର୍ଯ୍ୟାଦା [୭] ଶ୍ରଦ୍ଧା ସମ୍ପ୍ରତ୍ୟୟଃ ସ୍ପୃହା ॥
[୮] ମଧୁ ମଦ୍ୟେ ପୁଷ୍ପରସେ କ୍ଷୌଦ୍ରେ [୯] ଅନ୍ଧଂ ତମସ୍ୟପି ।
[୧୦] ଅତସ୍ତ୍ରିଷୁ ସମୁନ୍ନଦ୍ଧୌ ପଣ୍ଡିତଂମନ୍ୟଗର୍ବିତୌ ॥
[୧୧] ବ୍ରହ୍ମବନ୍ଧୁରଧିକ୍ଷେପେ ନିର୍ଦ୍ଦେଶେ [୧୨] ଽଥାବଲମ୍ବିତଃ ।
ଅବିଦୂରେ ଽପ୍ୟବଷ୍ଟବ୍ଧୌ [୧୩] ପ୍ରସିଦ୍ଧୌ ଖ୍ୟାତଭୂଷିତୌ ॥

ନାନ୍ତଃ ।

[୧] ସୂର୍ଯ୍ୟ ବହ୍ନି ଚିତ୍ରଭାନୁ [୨] ଭାନୁ ରଶ୍ମି ଦିବାକରୌ ॥

---

୧ । ଦେଶବିଶେଷ । ନଦବିଶେଷ । ସମୁଦ୍ର । ନଦୀ ଏମାନଙ୍କୁ ସିନ୍ଧୁ ବୋଲାଯାଏ ।
୨ । ପ୍ରକାରକୁ ବିଧ ଏବଂ ବିଧା ବୋଲାଯାଏ । ୩ । ରମ୍ୟକୁ ସାଧୁ କହି ।
୪ । ଭାର୍ଯ୍ୟା । ସ୍ନୁଷା ( ପୁତ୍ରବଧୂ ) ସ୍ତ୍ରୀମାନ ଏମାନଙ୍କୁ ବଧୂ କହି ।
୫ । ଲେପ । ଅମୃତ । ସ୍ନୁହୀ ଏମାନଙ୍କୁ ସୁଧା କହି ।
୬ । ପ୍ରତିଜ୍ଞା । ମର୍ଯ୍ୟାଦା ଏ ଦୁହିଙ୍କି ସନ୍ଧା କହି ।
୭ । ଅତ୍ୟନ୍ତବିଶ୍ୱାସ । ସ୍ପୃହା ( ଇଚ୍ଛା ) ଏ ଦୁହିଙ୍କି ଶ୍ରଦ୍ଧା କହି ।
୮ । ମଦ୍ୟ । ପୁଷ୍ପରସ । କ୍ଷୌଦ୍ର ଏମାନଙ୍କୁ ମଧୁ କହି ।
୯ । ଅନ୍ଧକାରକୁ ଅନ୍ଧ କହି ।
୧୦ । ପଣ୍ଡିତାଭିମାନୀ । ଅହଂକାରୀ ଏ ଦୁହିଙ୍କି ସମୁନ୍ନଦ୍ଧ କହି ।
୧୧ । ଅଧିକ୍ଷେପ । ନିର୍ଦ୍ଦେଶ ଏ ଦୁହିଙ୍କି ବ୍ରହ୍ମବନ୍ଧୁ କହି ।
୧୨ । ଆଶ୍ରିତ । ନିକଟ ଏ ଦୁହିଙ୍କି ଅବଷ୍ଟବ୍ଧ କହି ।
୧୩ । ଖ୍ୟାତ । ଭୂଷିତ ଏ ଦୁହିଙ୍କି ପ୍ରସିଦ୍ଧ କହି ।

ନାନ୍ତବର୍ଗଃ ।

୧ । ସୂର୍ଯ୍ୟ । ଅଗ୍ନି ଏ ଦୁହିଙ୍କି ଚିତ୍ରଭାନୁ କହି ।
୨ । କିରଣ । ସୂର୍ଯ୍ୟ ଏ ଦୁହିଙ୍କି ଭାନୁ କହି ।

[୧] ଋତାମ୍ନାନୌ ଧାତୃଦେବୌ [୨] ମୂର୍ଖନୀଚୌ ପୃଥଗ୍ଜନୌ ।
[୩] ଗ୍ରାବାଣୌ ଶୈଳପାଷାଣୌ [୪] ପତ୍ରିଣୌ ଶରପକ୍ଷିଣୌ ॥
[୫] ତରୁଶୈଳୌ ଶିଖରିଣୌ [୬] ଶିଖିନୌ ବହ୍ନିବର୍ହିଣୌ ।
[୭] ପ୍ରତିଯତ୍ନାବୁଭୌ ଲିପ୍ସୋପଗ୍ରହାବଥ [୮] ସାଦିନୌ ॥
ଦ୍ୱୌ ସାରଥିହୟାରୋହୌ [୯] ବାଜିନୋ ଽଶ୍ୱେଷୁ ପକ୍ଷିଣଃ ।
[୧୦] କୁଲେ ଽପ୍ୟଭିଜନୋ ଜନ୍ମଭୂମ୍ୟାମପ୍ୟଥ [୧୧] ହାୟନାଃ ॥
ବର୍ଷାର୍ଚ୍ଚିର୍ବ୍ରୀହିଭେଦାଃ ସ୍ୟୁ [୧୨] ଶ୍ଚନ୍ଦ୍ରାଗ୍ନ୍ୟର୍କା ବିରୋଚନାଃ ।
[୧୩] କେଶେଽପି ବୃଜିନୋ [୧୪] ବିଶ୍ୱକର୍ମାର୍କ ସୁରଶିଳ୍ପିନୋଃ ॥
[୧୫] ଆତ୍ମା ଯତ୍ନୋ ଧୃତିର୍ବୁଦ୍ଧିଃ ସ୍ୱଭାବୋ ବ୍ରହ୍ମ ବର୍ଷ୍ମ ଚ ।
[୧୬] ଶକ୍ରୋବାତୁକମତ୍ତେଭୌ ବର୍ଷୁକାବ୍ଦୌ ଘନାଘନାଃ ॥

---

୧ । ବିଧାତା । ଦେବ୍ତା ଏ ଦୁହିଁଙ୍କି ଋତାମ୍ନନ୍ କୋହାଯାଏ ।
୨ । ମୂର୍ଖ । ନୀଚ ଏ ଦୁହିଁଙ୍କି 'ପୃଥଗ୍ଜନ' ବୋଲନ୍ତି ।
୩ । ପର୍ବତ । ପ୍ରସ୍ତର ଏ ଦୁହିଁଙ୍କି ଗ୍ରାବ କହ ।
୪ । ଶର । ପକ୍ଷିଜନ୍ତୁ ଏ ଦୁହିଁଙ୍କି ପତ୍ରୀ କହ ।
୫ । ବୃକ୍ଷ । ପର୍ବତ ଏ ଦୁହିଁଙ୍କି ଶିଖରୀ କହ ।
୬ । ଅଗ୍ନି । ମୟୂର ଏ ଦୁହିଁଙ୍କି ଶିଖୀ କହ ।
୭ । ଲାଭଇଚ୍ଛା । ଉପଗ୍ରହ ଏ ଦୁହିଁଙ୍କି ପ୍ରତିଯତ୍ନ କହ ।
୮ ସାରଥୀ । ଘୋଡ଼ାଚଢ଼ୀ ( ଘୋଡ଼ସବାର ) ଏ ଦୁହିଁଙ୍କି ସାଦୀ କୋହାଯାଏ ।
୯ । ଘୋଡ଼ା । ବାଣ । ପକ୍ଷିଜନ୍ତୁ ଏମାନଙ୍କୁ ବାଜୀ କହ ।
୧୦ । କୂଳ । ଜନ୍ମଭୂମି ଏ ଦୁହିଁଙ୍କି ଅଭିଜନ କହି ।
୧୧ । ବର୍ଷ । ଶିଖା । ଧାନ୍ୟବିଶେଷ ଏମାନଙ୍କୁ ହାୟନ କହି ।
୧୨ । ଚନ୍ଦ୍ର । ଅଗ୍ନି । ସୂର୍ଯ୍ୟ ଏମାନଙ୍କୁ ବିରୋଚନ କହି ।
୧୩ । କେଶକୁ ବୃଜିନ କହି । ୧୪ । ସୂର୍ଯ୍ୟ । ଦେବଶିଳ୍ପି ଏ ଦୁହିଁଙ୍କି ବିଶ୍ୱକର୍ମା କହି ।
୧୫ । ଯତ୍ନ । ଧୃତି । ବୁଦ୍ଧି । ସ୍ୱଭାବ । ବ୍ରହ୍ମ । ଦେହ ଏମାନଙ୍କୁ ଆତ୍ମା କହ ।
୧୬ । ଇନ୍ଦ୍ର । ବାତୁକ । ମତ୍ତହସ୍ତୀ । ବର୍ଷାମେଘ ଏମାନଙ୍କୁ ଘନାଘନ କହି ।

[୧] ଅଭିମାନୋଽର୍ଥାଦିଦର୍ପେ ଜ୍ଞାନେ ପ୍ରଣୟହିଂସୟୋଃ ।
[୨] ଘନୋ ମେଘେ ମୂର୍ତ୍ତିଗଣେ ତ୍ରିଷୁ ମୂର୍ତ୍ତେ ନିରନ୍ତରେ ।
[୩] ଇନଃ ସୂର୍ଯ୍ୟେ ପ୍ରଭୌ [୪] ରାଜା ମୃଗାଙ୍କେ କ୍ଷତ୍ରିୟେ ନୃପେ
[୫] ବାଣିନ୍ୟୌ ନର୍ତ୍ତକୀ ମତ୍ତେ [୬] ସ୍ରବନ୍ତ୍ୟାମପି ବାହିନୀ ।
[୭] ହ୍ରାଦିନ୍ୟୌ ବଜ୍ରତଡ଼ିତୌ [୮] ବନ୍ଦାୟାମପି କାମିନୀ ।
[୯] ତ୍ୱଗ୍ଦେହୟୋରପି ତନୁଃ [୧୦] ସୂନାଧୋଜିହ୍ୱିକାପି ଚ ॥
[୧୧] କ୍ରତୁବିସ୍ତାରୟୋରସ୍ତ୍ରୀ ବିତାନଂ ତ୍ରିଷୁ ତୁଚ୍ଛକେ ।
ମନ୍ଦେଽଥ [୧୨] କେତନଂ କୃତ୍ୟେ କେତାବୁପନିମନ୍ତ୍ରଣେ ॥
[୧୩] ବେଦସ୍ତତ୍ତ୍ୱଂ ତପୋବ୍ରହ୍ମ ବ୍ରହ୍ମା ବିପ୍ରଃ ପ୍ରଜାପତିଃ ।
[୧୪] ଉତ୍ସାହନେ ଚ ହିଂସାୟାଂ ସୂଚନେ ଚାପି ଗନ୍ଧନଂ ॥
[୧୫] ଆତଞ୍ଚନଂ ପ୍ରତୀବାପ ଜବନାପ୍ୟାୟନାର୍ଥକଂ ।
[୧୬] ବ୍ୟଞ୍ଜନଂ ଲାଞ୍ଛନଂ ଶ୍ମଶ୍ରୁ ନିଷ୍ଠାନାବୟବେଷ୍ୱପି ।

---

୧ । ଅର୍ଥାଦିଦର୍ପ । ଜ୍ଞାନ । ପ୍ରଣୟ । ହିଂସା ଏମାନଙ୍କୁ ଅଭିମାନ କହି ।
୨ । ମେଘ । ମୂର୍ତ୍ତିଗୁଣ । ମୂର୍ତ୍ତି । ନିରନ୍ତର ଏମାନଙ୍କୁ ଘନ କହି ।
୩ । ସୂର୍ଯ୍ୟ । ପ୍ରଭୁ ଏ ଦୁହିଙ୍କି ଇନ କହି ।
୪ । ଚନ୍ଦ୍ର । କ୍ଷତ୍ରିୟ । ନୃପ ଏମାନଙ୍କୁ ରାଜା କହି ।
୫ । ନର୍ତ୍ତକୀ । ମତ୍ତା ଏ ଦୁହିଙ୍କି ବାଣୀନୀ କହି ।   ୬ । ନଦୀକି ବାହିନୀ ବୋଲଯାଏ ।
୭ । ବଜ୍ର । ବିଦ୍ୟୁତ୍ । ( ବିଜୁଳି ) ଏ ଦୁହିଙ୍କି ହ୍ରାଦିନୀ କହି ।
୮ । ବୃକ୍ଷଉପରେ ଉଠିଥିବା ବୃକ୍ଷକୁ କାମିନୀ କହି ।
୯ । ଚର୍ମ । ଦେହ ଏ ଦୁହିଙ୍କି ତନୁ କହି ।   ୧୦ । ଅଧୋଜିହ୍ୱାକୁ ସୂନା କହି ।
୧୧ । ଯଜ୍ଞ । ବିସ୍ତାର । ତୁଚ୍ଛ । ମନ୍ଦ ଏମାନଙ୍କୁ ବିତାନ କହି ।
୧୨ । କାର୍ଯ୍ୟ । ଧ୍ୱଜା । ଉପନିମନ୍ତ୍ରଣ ଏମାନଙ୍କୁ କେତନ କହି ।
୧୩ । ବେଦ । ତତ୍ତ୍ୱ । ତପ । ବିପ୍ର । ପ୍ରଜାପତି । ଏମାନଙ୍କୁ ବ୍ରହ୍ମ କହି ।
୧୪ । ଉତ୍ସାହ । ହିଂସା । ସୂଚନ ଏମାନଙ୍କୁ ଗନ୍ଧନ କହି ।
୧୫ । ବିକ୍ଷେପଣ । ବେରଣ । ତୃପ୍ତି ଏମାନଙ୍କୁ ଆତଞ୍ଚନ କହି ।
୧୬ । ଚିହ୍ନ । ଶ୍ମଶ୍ରୁ । ନିଷ୍ଠାନ ଅବୟବ ଏମାନଙ୍କୁ ବ୍ୟଞ୍ଜନ କହି ।

ସ୍ୟାତ୍ [୧] କୌଳୀନଂ ଲୋକବାଦେ ଯୁଦ୍ଧେ ପଶ୍ୱହିପକ୍ଷିଣାଂ ।
[୨] ସ୍ୟାଦୁଦ୍ୟାନଂ ନିଃସରଣେ ବନଭେଦେ ପ୍ରୟୋଜନେ ॥
[୩] ଅବକାଶେ ସ୍ଥିତୌ ସ୍ଥାନଂ [୪] କ୍ରୀଡାଦାବପି ଦେବନଂ ।
[୫] ଉତ୍ଥାନଂ ପୌରୁଷେ ତନ୍ତ୍ରେ ସନ୍ନିବିଷ୍ଟୋଦ୍‌ଗମେଽପି ଚ ॥
[୬] ବ୍ୟୁତ୍ଥାନଂ ପ୍ରତିରୋଧେ ଚ ବିରୋଧାଚରଣେଽପି ଚ ।
[୭] ମାରଣେ ମୃତସଂସ୍କାରେ ଗତୌ ଦ୍ରବ୍ୟେଽର୍ଥଦାପନେ ॥
ନିର୍ବର୍ତ୍ତନୋପକରଣାନୁବ୍ରଜ୍ୟାସ୍ୱପି ଚ ସାଧନଂ ।
[୮] ନିର୍ଯ୍ୟାତନଂ ବୈରଶୁଦ୍ଧୌ ଦାନେ ନ୍ୟାସାର୍ପଣେଽପି ଚ ॥
[୯] ବ୍ୟସନଂ ବିପଦି ଭ୍ରଂଶେ ଦୋଷେ କାମଜକୋପଜେ ।
[୧୦] ପକ୍ଷ୍ମାକ୍ଷିଲୋମ୍ନି କିଞ୍ଜଲ୍କେ ତନ୍ତ୍ୱାଦ୍ୟଂଶେଽପ୍ୟଣୀୟସି ॥
[୧୧] ତିଥିଭେଦେ କ୍ଷଣେ ପର୍ବ [୧୨] ବର୍ତ୍ମ ନେତ୍ରଚ୍ଛଦେଽଧ୍ୱନି ।

---

୧। ଲୋକବାଦ। ଯୁଦ୍ଧ। ପଶୁ। ସର୍ପ। ପକ୍ଷୀ ଏମାନଙ୍କୁ କୌଳୀନ କହି।
୨। ନିଃସରଣ। ବନବିଶେଷ। ପ୍ରୟୋଜନ ଏମାନଙ୍କୁ ଉଦ୍ୟାନ କହି।
୩। ଅବକାଶ। ସ୍ଥିତି ଏ ଦୁହିଙ୍କି ସ୍ଥାନ କହି।
୪। ଦ୍ୟୂତ। କ୍ରୀଡ଼ା ଏ ଦୁହିଙ୍କି ଦେବନ କହି।
୫। ପୌରୁଷ। ତନ୍ତ୍ର। ସନ୍ନିବିଷ୍ଟ ଉଦ୍‌ଗମ ଏମାନଙ୍କୁ ଉତ୍ଥାନ କହି।
୬। ପ୍ରତିରୋଧ। ବିରୋଧାଚରଣ ଏ ଦୁହିଙ୍କି ବ୍ୟୁତ୍ଥାନ କହି।
୭। ମାରଣ। ମୃତଦେହର ସଂସ୍କାର। ଗତି। ଦ୍ରବ୍ୟ। ଅର୍ଥଦାନ। ନିର୍ବର୍ତ୍ତନା। ଉପକରଣ। ଅନୁଗମନ ଏମାନଙ୍କୁ ସାଧନ କହି।
୮। ବୈରଶୁଦ୍ଧି। ଦାନ। ଗଚ୍ଛିତଧନର ଅର୍ପଣ। ଏମାନଙ୍କୁ ନିର୍ଯ୍ୟାତନ କହି।
୯। ବିପତ୍ତି। ଭ୍ରଂଶ। କାମଜ। କୋପଜ। ଦୋଷ ଏମାନଙ୍କୁ ବ୍ୟସନ କହି। ( କହି।
୧୦। ଚକ୍ଷୁର ଲୋମ। ପଦ୍ମର କେଶର। ସୂତାଦିର ଅତ୍ୟଗ୍ର। ସୂକ୍ଷ୍ମାଂଶ ଏମାନଙ୍କୁ ପକ୍ଷ୍ମ
୧୧। ତିଥିଭେଦ ( ଅମାବାସ୍ୟା ଇତ୍ୟାଦି ) କ୍ଷଣ ଏ ଦୁହିଙ୍କି ପର୍ବ କହି।
୧୨। ଚକ୍ଷୁର ପତା। ପଥ ଏ ଦୁହିଙ୍କି ବର୍ତ୍ମ କହି।

[୧] ଅକାର୍ଯ୍ୟଗୁହ୍ୟେ କୌପୀନଂ [୨] ମୈଥୁନଂ ସଙ୍ଗତୌ ରତୌ ।
[୩] ପ୍ରଧାନଂ ପରମାତ୍ମାଧିଃ [୪] ପ୍ରଜ୍ଞାନଂ ବୁଦ୍ଧିଚହ୍ନୟୋଃ ।
[୫] ପ୍ରସୂନଂ ପୁଷ୍ପଫଲୟୋ [୬] ନିଧନଂ କୁଳନାଶୟୋଃ ।
[୭] କ୍ରନ୍ଦନେ ରୋଦନାହ୍ୱାନେ [୮] ବର୍ଷ୍ମ ଦେହ ପ୍ରମାଣୟୋଃ ।
[୯] ଗୃହଦେହତ୍ୱିଟ୍‌ପ୍ରଭାବା ଧାମାନ୍ୟଥ [୧୦] ଚତୁଷ୍ପଥେ ।
ସନ୍ନିବେଶେଚ ସଂସ୍ଥାନଂ [୧୧] ଲକ୍ଷ୍ମ ଚହ୍ନ ପ୍ରଧାନୟୋଃ ।
[୧୨] ଆଚ୍ଛାଦନ ସମ୍ପିଧାନମପବାରଣମିତ୍ୟୁଭେ ।
[୧୩] ଆରାଧନଂ ସାଧନେ ସ୍ୟାଦବାପ୍ତୌ ତୋଷଣେ ଽପିଚ ।
[୧୪] ଅଧିଷ୍ଠାନଂ ଚକ୍ରପୁରପ୍ରଭାବାଧ୍ୟାସନେଷ୍ୱପି ।
[୧୫] ରତ୍ନଂ ସ୍ୱଜାତିଶ୍ରେଷ୍ଠେ ଽପି [୧୬] ବନେ ସଲିଳକାନନେ ।
[୧୭] ତଲିନଂ ବିରଳେ ସ୍ତୋକେ ବାଚ୍ୟଲିଙ୍ଗା ସ୍ତଥୋତ୍ତରେ ।
[୧୮] ସମାନାଃ ସତ୍ସମୈକେ ସ୍ୟୁଃ [୧୯] ପିଶୁନୌ ଖଲସୂଚକୌ ।

---

୧ । ଅକାର୍ଯ୍ୟ । ଗୁହ୍ୟ ( ଗୁପ୍ତ ବସ୍ତ୍ର ) ଏ ଦୁହିଙ୍କି କୌପୀନ କହି ।
୨ । ରମଣ ସଙ୍ଗତ ( ମିଳନ ) ଏ ଦୁହିଙ୍କି ମୈଥୁନ କହି ।
୩ । ପରମାତ୍ମା । ବୁଦ୍ଧି ଏ ଦୁହିଙ୍କି ପ୍ରଧାନ କହି । ୪ । ବୁଦ୍ଧି । ଚହ୍ନ ଏ ଦୁହିଙ୍କି ପ୍ରଜ୍ଞାନ କହି
୫ । ପୁଷ୍ପ । ଫଳ ଏ ଦୁହିଙ୍କି ପ୍ରସୂନ କହି । ୬ । କୁଳ । ନାଶ ଏ ଦୁହିଙ୍କି ନିଧନ କହି ।
୭ । ରୋଦନ । ଆହ୍ୱାନ ଏ ଦୁହିଙ୍କି କ୍ରନ୍ଦନ କହି । ଦେହ । ପ୍ରମାଣ ଏ ଦୁହିଙ୍କି ବର୍ଷ୍ମ କହି ।
୯ । ଗୃହ । ଦେହ । ଦୀପ୍ତି । ପ୍ରଭାବ ଏମାନଙ୍କୁ ଧାମ କହି ।
୧୦ । ଚତୁଷ୍ପଥ । ସନ୍ନିବେଶ ଏ ଦୁହିଙ୍କି ସଂସ୍ଥାନ କହି ।
୧୧ । ଚହ୍ନ । ପ୍ରଧାନ ଏ ଦୁହିଙ୍କି ଲକ୍ଷ୍ମ କହି ।
୧୨ । ସମ୍ପିଧାନ । ଅପବାରଣ ଏ ଦୁହିଙ୍କି ଆଚ୍ଛାଦନ କହି ।
୧୩ । ସାଧନ । ପ୍ରାପ୍ତି । ତୁଷ୍ଟି ଏମାନଙ୍କୁ ଆରାଧନ କହି ।
୧୪ । ଚକ୍ର । ପୁର । ପ୍ରଭାବ । ଅଧ୍ୟାସନ ଏମାନଙ୍କୁ ଅଧିଷ୍ଠାନ କହି ।
୧୫ । ସ୍ୱଜାତି ଶ୍ରେଷ୍ଠକୁ ରତ୍ନ କହି । ୧୬ । ଜଳ । ଅରଣ୍ୟ ଏ ଦୁହିଙ୍କି ବନ କହି ।
୧୭ । ବିରଳ । ଅଳ୍ପ ଏ ଦୁହିଙ୍କି ତଳିନ କହି ।
୧୮ । ସାଧୁ । ତୁଲ୍ୟ ସତ୍ତ୍ୱ ଏମାନଙ୍କୁ ସମାନ କହି ।
୧୯ । ଖଳ । ସୂଚକ ( ଖଚୁଆ ) ଏ ଦୁହିଙ୍କି ପିଶୁନ କହି ।

[୧।୨] ହୀନନ୍ୟୂନାବୂନଗର୍ହ୍ୟୌ [୩] ବେଗିଶୂରୌ ତରସ୍ୱିନୌ ।
[୪] ଅଭିପନ୍ନୋଽପରାଦ୍ଧୋଽଭିଗ୍ରସ୍ତବ୍ୟାପଦ୍ଗତାବପି ।

ପାନ୍ତାଃ ।

[୧] କଲାପୋ ଭୂଷଣେ ବର୍ହେ ତୂଣୀରେ ସଂହତେଽପି ଚ ।
[୨] ପରିଚ୍ଛଦେ ପରୀବାପଃ ପର୍ଯ୍ୟୁପ୍ତୌ ସଲିଲସ୍ଥିତୌ ।
[୩] ଗୋଧୁଗ୍ଗୋଷ୍ଠପତୀ ଗୋପୌ [୪] ହରବିଷ୍ଣୂ ବୃଷାକପୀ ।
[୫] ବାଷ୍ପମୂଷ୍ମାଶ୍ରୁ [୬] କଶିପୁ ତ୍ୱନ୍ନମାଚ୍ଛାଦନଂ ଦ୍ୱୟଂ ।
[୭] ତଲ୍ପଂ ଶଯ୍ୟାଟ୍ଟଦାରେଷୁ [୮] ସ୍ତମ୍ବେଽପି ବିଟପୋଽସ୍ତ୍ରିୟାଂ ।
[୯] ପ୍ରାପ୍ତରୂପ ସ୍ୱରୂପାଭିରୂପା ବୁଧମନୋଜ୍ଞୟୋଃ ।
ଭେଦ୍ୟଲିଙ୍ଗା ଅମୀ [୧୦] କୂର୍ମୀ ବୀଣାଭେଦଶ୍ଚ କଚ୍ଛପୀ ।

---

୧ । ତୁଚ୍ଛ ( ଊଣା ) ନିନ୍ଦାଯୋଗ୍ୟ ଏ ଦୁହିଙ୍କି ହୀନ କହି ।
୨ । ଊନ । ନିନ୍ଦିତ ଏ ଦୁହିଙ୍କି ନ୍ୟୂନ କହି ।
୩ । ବେଗବାନ୍ । ଶୂର ଏ ଦୁହିଙ୍କି ତରସ୍ୱୀ କହି ।
୪ । ଅପରାଧି । ଅଭିଗ୍ରସ୍ତ । ଆପଦ୍ଗତ ଏମାନଙ୍କୁ ଅଭିପନ୍ନ କହି ।

ପାନ୍ତବର୍ଗଃ ।

୧ । ଭୂଷଣ । ମୟୂରପୁଚ୍ଛ । ତୂଣୀର । ସମୂହ ଏମାନଙ୍କୁ କଲାପ କହି ।
୨ । ପରିଚ୍ଛେଦ । ପର୍ଯ୍ୟୁପ୍ତି । ଜଳସ୍ଥିତି ଏମାନଙ୍କୁ ପରୀବାପ କହି ।
୩ । ଗୋଦୋହନକାରୀ । ଗୋଷ୍ଠପତି ଏ ଦୁହିଙ୍କି ଗୋପ କହି ।
୪ । ମହାଦେବ । ବିଷ୍ଣୁ ଏ ଦୁହିଙ୍କି ବୃଷାକପି କହି ।
୫ । ବାମ୍ଫ । ଅଶ୍ରୁ ଏ ଦୁହିଙ୍କି ବାଷ୍ପ କହି ।
୬ । ଅନ୍ନ । ଆଚ୍ଛାଦନ ଏ ଦୁହିଙ୍କି କଶିପୁ କହି ।
୭ । ଶଯ୍ୟା ଅଟ୍ଟାଳିକାଉପରିଗୃହ ସ୍ତ୍ରୀ ଏମାନଙ୍କୁ ତଳ୍ପ କହି ।
୮ । ଶାଖା । ସ୍ତମ୍ବ ଏ ଦୁହିଙ୍କି ବିଟପ କହି ।
୯ । ପଣ୍ଡିତ । ମନୋଜ୍ଞ ଏ ଦୁହିଙ୍କି ପ୍ରାପ୍ତରୂପ, ସ୍ୱରୂପ ଏବଂ ଅଭିରୂପ କହି ।
୧୦ । କୂର୍ମୀ । ବୀଣାବିଶେଷ ଏ ଦୁହିଙ୍କି କଚ୍ଛପୀ କହି ।

### ଫାନ୍ତାଃ ।

[୧] ରବର୍ଣ୍ଣେ ପୁଂସି ରେଫଃ ସ୍ୟାତ୍ କୁତ୍ସିତେ ବାଚ୍ୟଲିଙ୍ଗକଃ ।
ତ୍ରିଷୁ ସ୍ୟାତ୍କୁତ୍ସିତେ ରେଫୋ ବର୍ଣ୍ଣଭେଦେ ପୁମାନୟଂ ॥
[୨] ଶିଫା ଜଟାୟାଂ ସରିତି ମାଂସିକାୟାଂ ଚ ମାତରି ।
[୩] ଶଫଂ ମୂଲେ ତରୂଣାଂ ଚ ଗବାଦୀନାଂ ଖୁରେଽପି ଚ ।
[୪] ଗୁଲ୍ଫଃ ସ୍ୟାଦ୍ଗୁମ୍ଫନେ ବାହୋରଲଙ୍କାରେଽପି କୀର୍ତ୍ତିତଃ ।

### ବାନ୍ତାଃ ।

[୧] ଅନ୍ତରାଭବସତ୍ତ୍ୱେଽଶ୍ୱେ ଗନ୍ଧର୍ବୋ ଦିବ୍ୟଗାୟନେ ।
[୨] କମ୍ବୁର୍ନା ବଲୟେ ଶଙ୍ଖେ [୩] ଦ୍ୱିଜିହ୍ୱୌ ସର୍ପସୂଚକୌ ।
[୪] ପୂର୍ବୋଽନ୍ୟଲିଙ୍ଗଃ ପ୍ରାଗାହ ପୁଂବହୁତ୍ୱେଽପି ପୂର୍ବଜାନ୍ ।

### ଭାନ୍ତାଃ ।

[୧] କୁମ୍ଭୌ ଘଟେଭମୂର୍ଦ୍ଧାଂଶୌ [୨] ଡିମ୍ଭୌ ତୁ ଶିଶୁବାଲିଶୌ ।

---

ଫାନ୍ତବର୍ଗଃ ।

୧ । ରବର୍ଣ୍ଣ । କୁତ୍ସିତ ଏ ଦୁହିଙ୍କି ରେଫ କହି ।
୨ । ଜଟା । ସରିତ । ମାଂସିକ । ମାତା ଏମାନଙ୍କୁ ଶିଫା କହି ।
୩ । ବୃକ୍ଷମାନଙ୍କର ମୂଳ । ଗବାଦିମାନଙ୍କର ଖୁର ଏ ଦୁହିଙ୍କି ଶଫ କହି ।
୪ । ଗୁମ୍ଫନ । ବାହୁର ଅଳଙ୍କାର ଏ ଦୁହିଙ୍କି ଗୁଲ୍ଫ କହି ।

ବାନ୍ତବର୍ଗଃ ।

୧ । ମରଣଉତ୍ତାରୁ ଉତ୍ପତ୍ତି । ଘୋଟକ । ସ୍ୱର୍ଗୀୟଗାୟକ ଏମାନଙ୍କୁ ଗନ୍ଧର୍ବ କହି ।
୨ । ବଳୟ । ଶଙ୍ଖ ଏ ଦୁହିଙ୍କି କମ୍ବୁ କହି ।
୩ । ସର୍ପ । ସୂଚକ ( ଖଳ ) ଏ ଦୁହିଙ୍କି ଦ୍ୱିଜିହ୍ୱ କହି ।
୪ । ପ୍ରାକ୍ । ପ୍ରଥମ । ବହୁତ୍ୱ । ପୂର୍ବଜନ୍ମା ଏମାନଙ୍କୁ ପୂର୍ବ କହି ।

ଭାନ୍ତବର୍ଗଃ ।

୧ । ଘଟ । ହସ୍ତୀ ମସ୍ତକର ଅଂଶ ଏ ଦୁହିଙ୍କି କୁମ୍ଭ କହି ।
୨ । ଶିଶୁ । ମୂର୍ଖ ଏ ଦୁହିଙ୍କି ଡିମ୍ଭ କହି ।

[୧] ସ୍ତମ୍ଭୌ ସ୍ଥୂଣା ଜଡୀଭାବୌ [୨] ଶମ୍ଭୂ ବ୍ରହ୍ମତ୍ରିଲୋଚନୌ ।
[୩] କୁକ୍ଷିଭ୍ରୂଣାର୍ଭକା ଗର୍ଭାଃ [୪] ବିଶ୍ରମ୍ଭଃ ପ୍ରଣୟେଽପି ଚ ।
[୫] ସ୍ୟାଦ୍ଭେର୍ଯ୍ୟାଂ ଦୁନ୍ଦୁଭିଃ ପୁଂସି ସ୍ୟାଦକ୍ଷେ ଦୁନ୍ଦୁଭିଃ ସ୍ତ୍ରିୟାଂ ।
[୬] ସ୍ୟାନ୍ମହାରଜନଂ କ୍ଲୀବେ କୁସୁମ୍ଭଂ କରକେ ପୁମାନ୍ ।
[୭] କ୍ଷତ୍ରିୟେଽପି ଚ ନାଭିର୍ନା [୮] ସୁରଭିର୍ଗବି ଚ ସ୍ତ୍ରିୟାଂ ।
[୯] ସଭା ସଂସଦି ସଭ୍ୟେ ଚ [୧୦] ତ୍ରିଷ୍ୱଧ୍ୟକ୍ଷେଽପି ବଲ୍ଲଭଃ ।

## ମାନ୍ତାଃ ।

[୧] କିରଣପ୍ରଗ୍ରହୌ ରଶ୍ମୀ [୨] କପିଭେକୌ ପ୍ଲବଙ୍ଗମୌ ॥
[୩] ଇଚ୍ଛାମନୋଭବୌ କାମୌ [୪] ଶକ୍ତ୍ୟୁଦ୍ୟୋଗୌ ପରାକ୍ରମୌ ।
[୫] ଧର୍ମ୍ମାଃ ପୁଣ୍ୟଯମନ୍ୟାୟ ସ୍ୱଭାବାଚାରସୋମପାଃ ।
[୬] ଉପାୟପୂର୍ବ୍ବ ଆରମ୍ଭ ଉପଧା ତ୍ୱପ୍ୟୁପକ୍ରମଃ ।
[୭] ବଣିକ୍ପଥଃ ପୁରମ୍ବେଦୋ ନିଗମୋ [୮] ନାଗରେ ବଣିକ୍ ॥

---

୧ । ସ୍ଥୂଣ । ଜଡତା ଏ ଦୁହିଙ୍କି ସ୍ତମ୍ଭ କହି । ୨ । ବ୍ରହ୍ମା । ମହାଦେବ ଏ ଦୁହିଙ୍କି ଶମ୍ଭୁ କହି
୩ । ଉଦର । ସ୍ତ୍ରୀଗର୍ଭ । ବାଳକ ଏମାନଙ୍କୁ ଗର୍ଭ କହି । ୪ । ପ୍ରୀତିକି ବିଶ୍ରମ୍ଭ କହି ।
୫ । ଭେରୀ (ବାଦ୍ୟବିଶେଷ) ଅକ୍ଷକ୍ରୀଡ଼ା ଏ ଦୁହିଙ୍କି ଦୁନ୍ଦୁଭି କହି ।
୬ । ମହାରଜନ । (ମହାରଙ୍ଗପୁଷ୍ପ) କମଣ୍ଡଳୁ ଏ ଦୁହିଙ୍କି କୁସୁମ୍ଭ କହି ।
୭ । କ୍ଷତ୍ରିୟକୁ ନାଭି କହି । ୮ । ଗୋ (ଧେନୁକୁ) ସୁରଭି କହି ।
୯ । ସମାଜ । ସଭ୍ୟ ଏ ଦୁହିଙ୍କି ସଭା କହି । ୧୦ । ଅଧ୍ୟକ୍ଷକୁ ବଲ୍ଲଭ କହି ।

ମାନ୍ତବର୍ଗଃ ।

୧ । କିରଣ । ରଜ୍ଜୁ ଏ ଦୁହିଙ୍କି ରଶ୍ମି କହି । ୨ । କପି । ଭେକ ଏ ଦୁହିଙ୍କି ପ୍ଲବଙ୍ଗମ କହି
୩ । ଅଭିଳାଷ । କନ୍ଦର୍ପ ଏ ଦୁହିଙ୍କି କାମ କହି । ୪ । ଶକ୍ତି ଉଦ୍ୟୋଗ ଏ ଦୁହିଙ୍କି ପରାକ୍ରମ କହି
୫ । ପୁଣ୍ୟ । ଯମ (ଇନ୍ଦ୍ରିୟଦମନ) ନ୍ୟାୟ । ସ୍ୱଭାବ । ଆଚାର । ସୋମପାନକର୍ତ୍ତା ଏମାନଙ୍କୁ ଧର୍ମ କହି ।
୬ । ଉପାୟପୂର୍ବକଆରମ୍ଭ । ଉପଧା (ଧର୍ମାଦିଦ୍ୱାରା ସ୍ୱଭାବ ପରୀକ୍ଷା) ଏ ଦୁହିଙ୍କି ଉପକ୍ରମ କହି
୭ । ପୁର । ନଗର । ବେଦ ଏମାନଙ୍କୁ ନିଗମ କହି ।
୮ । ନଗରସ୍ଥପଦାର୍ଥ ବାଣିଜ୍ୟକାରୀ ଏ ଦୁହିଙ୍କି ନୈଗମ କହି ।

[୧] ନୈଗମୌ ଦ୍ୱୌ ବଣେ ଗମୋ ଜାଲ ଗୃରୁ ସିତେ ତ୍ରିଷୁ ।
[୨] ସ୍କନ୍ଦ୍ୱାଦପୂର୍ବୋ ବୃନ୍ଦେ ଽପି ଗ୍ରାମଃ [୩] କ୍ରାନ୍ତୌ ଚ ବିକ୍ରମଃ ।
[୪] ଗୁଲ୍ମା ରୁକ୍‌ସ୍ତମ୍ଭସେନାଶ୍ଚ [୫] ଯାମିଃ ସ୍ୱସୃ କୁଳସ୍ତ୍ରିୟୋଃ ।
[୬] କ୍ଷିତି କ୍ଷାନ୍ତ୍ୟୋଃ କ୍ଷମା [୭] ଯୁକ୍ତେ କ୍ଷମଂ ଶକ୍ତେ ହିତେ ତ୍ରିଷୁ ।
[୮] ତ୍ରିଷୁ ଶ୍ୟାମୌ ହରିତ୍ କୃଷ୍ଣୌ [୯] ଶ୍ୟାମା ସ୍ୟାଚ୍ଛାରିବା ନିଶା ।
[୧୦] ଲଲାମଂ ପୁଚ୍ଛପୁଣ୍ଡ୍ରାଶ୍ୱଭୂଷାପ୍ରାଧାନ୍ୟକେତୁଷୁ ।
[୧୧] ସୂକ୍ଷ୍ମମଧ୍ୟାତ୍ମମପ୍ୟା [୧୨] ଦ୍ୟେ ପ୍ରଧାନେ ପ୍ରଥମସ୍ତ୍ରିଷୁ ।
[୧୩] ବାମୌ ବଲ୍ଗୁ ପ୍ରତୀପୌ ଦ୍ୱା [୧୪] ବଧମୌ ନ୍ୟୂନକୁତ୍ସିତୌ ।
[୧୫] ଜୀର୍ଣ୍ଣଂ ଚ ପରିଭୁକ୍ତଂ ଚ ଯାତଯାମମିଦଂ ଦ୍ୱୟଂ ।

ଯାନ୍ତାଃ ।

[୧] ତୁରଙ୍ଗ ଗରୁଡୌ ତାର୍କ୍ଷ୍ୟୌ [୨] ନିଲୟାପଚୟୌ କ୍ଷୟୌ ।

---

୧ । ବଣିଜନ । ଜାଲ । ଗୁରୁ (ବୃଦ୍ଧ) ଶୁକ୍ଳ ଏମାନଙ୍କୁ ଗମ କହି ।
୨ । ଶବ୍ଦାଦିରହିତ । ସମୂହ ଏ ଦୁହିଙ୍କି ଗ୍ରାମ କହି । ୩ । ଅତିକ୍ରମଣକୁ ବିକ୍ରମ କହି ।
୪ । ରୋଗବିଶେଷ । ସ୍ତମ୍ଭ (ଧାନ୍ୟାଦି ରଗୁଚ୍ଛ) ସେନା ଏମାନଙ୍କୁ ଗୁଲ୍ମ କହି ।
୫ । ଭଗିନୀ । କୁଳସ୍ତ୍ରୀ ଏ ଦୁହିଙ୍କି ଯାମି କହି । ୬ । ପୃଥିବୀ । ଧୈର୍ଯ୍ୟ ଏ ଦୁହିଙ୍କି କ୍ଷମା କହି । ୭ । ଯୁକ୍ତ । ସମର୍ଥ ଉପକାର ଏମାନଙ୍କୁ କ୍ଷମ କହି ।
୮ । ହରିତ୍‌ବର୍ଣ୍ଣ । କୃଷ୍ଣବର୍ଣ୍ଣ ଏ ଦୁହିଙ୍କି ଶ୍ୟାମ କହି ।
୯ । ଲତାବିଶେଷ । ଦେବୀବିଶେଷ ଏ ଦୁହିଙ୍କି ଶ୍ୟାମା କହି ।
୧୦ । ପୁଚ୍ଛ । ପୁଣ୍ଡ୍ର (ତିଳକଚିହ୍ନ) ଅଶ୍ୱଭୂଷଣ । ପ୍ରାଧାନ୍ୟ । କେତୁଗ୍ରହ ଏମାନଙ୍କୁ ଲଲାମ କହି । ୧୧ । ଅଧ୍ୟାତ୍ମ ଅର୍ଥାତ୍ ପରମାତ୍ମାକୁ ସୂକ୍ଷ୍ମ କହି ।
୧୨ । ଆଦ୍ୟ । ପ୍ରଧାନ ଏ ଦୁହିଙ୍କି ପ୍ରଥମ କହି । ୧୩ । ସୁନ୍ଦର । ପ୍ରତିକୂଳ ଏ ଦୁହିଙ୍କି [ ବାମ କହି ।
୧୪ । ନ୍ୟୂନ । କୁତ୍ସିତ । ଏ ଦୁହିଙ୍କି ଅଧମ କହି ।
୧୫ । ଜୀର୍ଣ୍ଣ । ପରିଭୁକ୍ତ ଏ ଦୁହିଙ୍କି ଯାତଯାମ କହି ।

ଯାନ୍ତବର୍ଗଃ ।

୧ । ଘୋଟକ । ଗରୁଡ ଏ ଦୁହିଙ୍କି ତାର୍କ୍ଷ୍ୟ କହି ।
୨ । ଗୃହ । ଅପଚୟ (ନାଶ) ଏ ଦୁହିଙ୍କି କ୍ଷୟ କହି ।

[୧] ଶ୍ୱଶୁର୍ଯ୍ୟୌ ଦେବରଶ୍ୟାଲୌ [୨] ଭ୍ରାତୃବ୍ୟୌ ଭ୍ରାତୃଜଦ୍ୱିଷୌ ।
[୩] ପର୍ଜନ୍ୟୌ ରସଦଦେବେନ୍ଦ୍ରୌ [୪] ସ୍ୟାଦାର୍ଯ୍ୟଃ ସ୍ୱାମି ବୈଶ୍ୟୟୋଃ
[୫] ତିଷ୍ୟଃ ପୁଷ୍ୟେ କଲିଯୁଗେ [୬] ପର୍ଯ୍ୟାୟୋଽବସରେ କ୍ରମେ ।
[୭] ପ୍ରତ୍ୟୟୋଽଧୀନଶପଥଜ୍ଞାନବିଶ୍ୱାସହେତୁଷୁ ।
ରନ୍ଧ୍ରେ ଶବ୍ଦେ [୮] ଽଥାନୁଶୟୋ ଦୀର୍ଘଦ୍ୱେଷାନୁତାପୟୋଃ ।
[୯] ସ୍ଥୂଲୋଚ୍ଚୟସ୍ତ୍ୱସାକଲ୍ୟେ ଗଜାନାଂ ମଧ୍ୟମେ ଗତେ ॥
[୧୦] ସମୟାଃ ଶପଥାଚାରକାଲସିଦ୍ଧାନ୍ତସମ୍ବିଦଃ ।
[୧୧] ବ୍ୟସନାନ୍ୟଶୁଭଂ ଦୈବଂ ବିପଦତ୍ୟୟନାସ୍ତ୍ରୟଃ ॥
[୧୨] ଅତ୍ୟୟୋଽତିକ୍ରମେ କୃଚ୍ଛ୍ରେ ଦୋଷେ ଦଣ୍ଡେଽପ୍ୟ [୧୩] ଥାପଦ
ଯୁଦ୍ଧାୟତ୍ୟୋଃ ସମ୍ପରାୟଃ [୧୪] ପୂଜ୍ୟସ୍ତୁ ଶ୍ୱଶୁରେଽପି ଚ ॥
[୧୫] ପଶ୍ଚାଦବସ୍ଥାୟିବଲଂ ସମବାୟଶ୍ଚ ସନ୍ନୟୌ ।

---

୧ । ଦେବର । ଶାଳ ଏ ଦୁହିଙ୍କି ଶ୍ୱଶୁର୍ଯ୍ୟ କହି ।
୨ । ଭ୍ରାତୃପୁତ୍ର । ଶତ୍ରୁ ଏ ଦୁହିଙ୍କି ଭ୍ରାତୃବ୍ୟ କହି ।
୩ । ଗର୍ଜନମେଘ । ଇନ୍ଦ୍ର ଏ ଦୁହିଙ୍କି ପର୍ଜନ୍ୟ କହି ।
୪ । ସ୍ୱାମୀ । ବୈଶ୍ୟ ଏ ଦୁହିଙ୍କି ଅର୍ଯ୍ୟ କହି ।
୫ । ପୁଷ୍ୟାନକ୍ଷତ୍ର । କଳିଯୁଗ ଏ ଦୁହିଙ୍କି ତିଷ୍ୟ କହି ।
୬ । ଅବସର । କ୍ରମ ଏ ଦୁହିଙ୍କି ପର୍ଯ୍ୟାୟ କହି ।
୭ । ଅଧୀନ । ଶପଥ (ନିୟମ) ଜ୍ଞାନ । ବିଶ୍ୱାସ । ହେତୁ । ରନ୍ଧ୍ର, ଶବ୍ଦ ଏମାନଙ୍କୁ ପ୍ରତ୍ୟୟ କହି
୮ । ଦୀର୍ଘଦ୍ୱେଷ । ଅନୁତାପ ଏ ଦୁହିଙ୍କି ଅନୁଶୟ କହି ।
୯ । ଅସାକଲ୍ୟ । ହସ୍ତିମାନଙ୍କର ମଧ୍ୟମଗତି ଏ ଦୁହିଙ୍କି ସ୍ଥୂଳୋଚ୍ଚୟ କହି ।
୧୦ । ଶପଥ । ଆଚାର । କାଳ । ସିଦ୍ଧାନ୍ତ । ପ୍ରତିଜ୍ଞା ଏମାନଙ୍କୁ ସମୟ ବୋଲଯାଏ ।
୧୧ । ବ୍ୟସନ । ଅଶୁଭ । ଦୈବ । ସେଠ ଏମାନଙ୍କୁ ଅନୟ କହି ।
୧୨ । ଲଙ୍ଘନ । କୃଚ୍ଛ୍ର । ଦୋଷ । ଦଣ୍ଡ ଏମାନଙ୍କୁ ଅତ୍ୟୟ କହି ।
୧୩ । ଆପଦ । ଯୁଦ୍ଧ । ଆୟତି ଏମାନଙ୍କୁ ସମ୍ପରାୟ କହି । ୧୪ । ଶ୍ୱଶୁରଙ୍କୁ ପୂଜ୍ୟ କହି ।
୧୫ । ସମୂହ । ପୃଷ୍ଠସ୍ଥାୟି ସେନା ଏ ଦୁହିଙ୍କି ସନ୍ନୟ କହି ।

[୧] ସଙ୍ଘାତେ ସନ୍ନିବେଶେ ଚ ସଂସ୍ତ୍ୟାୟଃ [୨] ପ୍ରଣୟାସ୍ତ୍ୱମୀ ।
ବିସ୍ରମ୍ଭ ଯାଚ୍ଞା ପ୍ରେମାଣୋ [୩] ବିରୋଧେଽପି ସମୁଚ୍ଛ୍ରୟଃ ।
[୪] ବିଷୟୋ ଯସ୍ୟ ଯୋ ଜ୍ଞାତସ୍ତତ୍ର ଶବ୍ଦାଦିକେଷ୍ୱପି ।
[୫] ନିର୍ଯ୍ୟାସେଽପି କଷାୟୋ [୬] ଽସ୍ତ୍ରୀ ସଭାୟାଂ ଚ ପ୍ରତିଶ୍ରୟଃ ।
[୭] ପ୍ରାୟୋ ଭୂମ୍ନ୍ୟନ୍ତଗମନେ [୮] ମନ୍ୟୁର୍ଦୈନ୍ୟେ କ୍ରତୌ କ୍ରୁଧି ।
[୯] ରହସ୍ୟୋପସ୍ଥୟୋର୍ଗୁହ୍ୟଂ [୧୦] ସତ୍ୟଂ ଶପଥତଥ୍ୟୟୋଃ ।
[୧୧] ବୀର୍ଯ୍ୟଂ ବଳେ ପ୍ରଭାବେ ଚ [୧୨] ଦ୍ରବ୍ୟଂ ଭବ୍ୟେ ଗୁଣାଶ୍ରୟେ
[୧୩] ଧିଷ୍ଣ୍ୟଂ ସ୍ଥାନେ ଗୃହେ ଭେଽଗ୍ନୌ [୧୪] ଭାଗ୍ୟଂ କର୍ମ ଶୁଭାଶୁଭଂ
[୧୫] କଶେରୁହେମ୍ନୋର୍ଗାଙ୍ଗେୟଂ [୧୬] ବିଶଲ୍ୟା ଦନ୍ତିକାପି ଚ ।
[୧୭] ବୃଷାକପାୟୀ ଶ୍ରୀଗୌର୍ଯ୍ୟୋ [୧୮] ରଭିଖ୍ୟା ନାମଶୋଭୟୋଃ ।

---

୧ । ସମୂହ । ସନ୍ନିବେଶ ଏ ଦୁହିଙ୍କି ସଂସ୍ତ୍ୟାୟ କହି ।
୨ । ବିଶ୍ରମ୍ଭ । ଯାଚ୍ଞା । ପ୍ରୀତି ଏମାନଙ୍କୁ ପ୍ରଣୟ କହି ।
୩ । ବିରୋଧକୁ ସମୁଚ୍ଛ୍ରୟ କହି । ୪ । ଜନପଦ । ଗୋଚର ଏ ଦୁହିଙ୍କି ବିଷୟ କହି ।
୫ । ନିର୍ଯ୍ୟାସକୁ କଷାୟ କହି । ୬ । ସଭାକୁ ପ୍ରତିଶ୍ରୟ ବୋଲଯାଏ ।
୭ । ଅନ୍ତର୍ଗମନ (ମରଣ) କୁ ପ୍ରାୟ କହି ।
୮ । ଦୈନ୍ୟ । ଯାଗ । କ୍ରୋଧ ଏମାନଙ୍କୁ ମନ୍ୟୁ କହି ।
୯ । ରହସ୍ୟ । ଉପସ୍ଥ ଏ ଦୁହିଙ୍କି ଗୁହ୍ୟ କହି ।
୧୦ । ଶପଥ । ତଥ୍ୟ ଏ ଦୁହିଙ୍କି ସତ୍ୟ କହି ।
୧୧ । ବଳ । ପ୍ରଭାବ ଏ ଦୁହିଙ୍କି ବୀର୍ଯ୍ୟ କହି ।
୧୨ । ଭବ୍ୟ । ଗୁଣାଶ୍ରୟ ଏ ଦୁହିଙ୍କି ଦ୍ରବ୍ୟ ବୋଲି ।
୧୩ । ସ୍ଥାନ । ଗୃହ । ନକ୍ଷତ୍ର । ଅଗ୍ନି ଏମାନଙ୍କୁ ଧିଷ୍ଣ୍ୟ କହି ।
୧୪ । ଅଦୃଷ୍ଟ । ଶୁଭ ଅଶୁଭ କର୍ମ ଏ ଦୁହିଙ୍କି ଭାଗ୍ୟ କହି ।
୧୫ । କଶେରୁ । ସ୍ୱର୍ଣ୍ଣ ଏ ଦୁହିଙ୍କି ଗାଙ୍ଗେୟ କହି ।
୧୬ । ଦନ୍ତିକା । ଔଷଧିବିଶେଷ ଏ ଦୁହିଙ୍କି ବିଶଲ୍ୟା କହି ।
୧୭ । ଲକ୍ଷ୍ମୀ । ଗୌରୀ ଏ ଦୁହିଙ୍କି ବୃଷାକପାୟୀ ବୋଲଯାଏ ।
୧୮ । ନାମ । ଶୋଭା ଏ ଦୁହିଙ୍କି ଅଭିଖ୍ୟା କହି ।

[୧] ଅରମ୍ଭୋ ନିଷ୍କ୍ରିଃ ଶିକ୍ଷା ପୂଜନଂ ସମ୍ପ୍ରଧାରଣଂ ।
ଉପାୟଃ କର୍ମଚେଷ୍ଟା ଚ ଚିକିତ୍ସା ଚ ନବକ୍ରିୟାଃ ।
[୨] ଛାୟା ସୂର୍ଯ୍ୟପ୍ରିୟା କାନ୍ତିଃ ପ୍ରତିବିମ୍ବମନାତପଃ ।
[୩] କକ୍ଷ୍ୟା ପ୍ରକୋଷ୍ଠେ ହର୍ମ୍ମ୍ୟାଦେଃ କାଞ୍ଚ୍ୟାଂ ମଧ୍ୟେଭବନ୍ଧନେ ।
[୪] କୃତ୍ୟା କ୍ରିୟାଦେବତୟୋସ୍ତ୍ରିଷୁ ଭେଦ୍ୟେ ଧନାଦିଭିଃ ।
[୫] ଜନ୍ୟଃ ସ୍ୟାଜ୍ଜନବାଦେଽପି [୬] ଜଘନ୍ୟୋଽନ୍ତ୍ୟେଽଧମେଽପି ଚ
[୭] ଗର୍ହ୍ୟାଧୀନୌ ଚ ବକ୍ତବ୍ୟୌ [୮] କଲ୍ୟୌ ସଜ୍ଜନିରାମୟୌ ।
[୯] ଆତ୍ମବାନନପେତୋଽର୍ଥାଦର୍ଥ୍ୟଃ [୧୦] ପୁଣ୍ୟଂ ତୁ ଚାର୍ବପି ।
[୧୧] ରୂପ୍ୟଂ ପ୍ରଶସ୍ତରୂପେଽପି [୧୨] ବଦାନ୍ୟୋ ବଲ୍ଗୁବାଗପି ।
[୧୩] ନ୍ୟାଯ୍ୟେଽପି ମଧ୍ୟଂ [୧୪] ସୌମ୍ୟଂ ତୁ ସୁନ୍ଦରେ ସୋମଦୈବତେ

---

୧ । ଅରମ୍ଭ । ନିଷ୍କ୍ରୃତି । ଶିକ୍ଷା । ପୂଜନ । ନିଶ୍ଚୟ । ଉପାୟ । କର୍ମ୍ମ । ଚେଷ୍ଟା । ଚିକିତ୍ସା ଏମାନଙ୍କୁ କ୍ରିୟା ବୋଲଯାଏ ।

୨ । ସୂର୍ଯ୍ୟଭାର୍ଯ୍ୟା । କାନ୍ତି । ପ୍ରତିବିମ୍ବ । ଅତପର ଅଭାବ ଏମାନଙ୍କୁ ଛାୟା କହି ।

୩ । ହର୍ମ୍ମ୍ୟାଦିରପ୍ରକୋଷ୍ଠ ଅର୍ଥାତ୍ କୋଠରୀ । କାଞ୍ଚୀ । ହସ୍ତିର ମଧ୍ୟବନ୍ଧନ ଏମାନଙ୍କୁ କକ୍ଷ୍ୟା କହି ।

୪ । କର୍ମ୍ମ । ଦେବତା । ଧନାଦିଦ୍ୱାରା ଭେଦ୍ୟ ଏମାନଙ୍କୁ କୃତ୍ୟା କହି ।

୫ । ଜନବାଦକୁ ଜନ୍ୟ କହି ।

୬ । ଅନ୍ତ୍ୟ ଅର୍ଥାତ୍ ଚରମ । ଅଧମ ଏ ଦୁହିଙ୍କି ଜଘନ୍ୟ କହି ।

୭ । ଗର୍ହ୍ୟ ଅର୍ଥାତ୍ ନିନ୍ଦିତ । ଅଧୀନ ଏ ଦୁହିଙ୍କି ବକ୍ତବ୍ୟ କହି ।

୮ । ସଜ୍ଜ । ନିରୋଗ ଏ ଦୁହିଙ୍କି କଲ୍ୟ କହି ।

୯ । ପଣ୍ଡିତ । ଅର୍ଥରୁ ଅନପେତ ଏ ଦୁହିଙ୍କି ଅର୍ଥ୍ୟ କହି ।

୧୦ । ଚାରୁ ଅର୍ଥାତ୍ ମନୋହରକୁ ପୁଣ୍ୟ କହି । ୧୧ । ପ୍ରଶସ୍ତ ରୂପକୁ ରୂପ୍ୟ କହି ।

୧୨ । ମନୋହର ବାକ୍ୟକୁ ବଦାନ୍ୟ କହି ।

୧୩ । ନ୍ୟାଯ୍ୟ ଅର୍ଥାତ୍ ନ୍ୟାୟୋପେତକୁ ମଧ୍ୟ ବୋଲି ।

୧୪ । ସୁନ୍ଦର । ସୋମଦୈବତ ଏ ଦୁହିଙ୍କି ସୌମ୍ୟ କହି ।

## ରାନ୍ତଃ ।

[୧] ଜବଡାବସରୌ ବାରୌ [୨] ସ୍ତରୌ ପ୍ରସ୍ତରାଧ୍ୱରୌ ॥
[୩] ଗୁରୂ ଗୀଷ୍ପତିପିତ୍ରାଦ୍ୟୌ [୪] ଦ୍ୱାପରୌ ଯୁଗସଂଶୟୌ ।
[୫] ପ୍ରକାରେ ଭେଦସାଦୃଶ୍ୟା [୬] ଆକାରାବିଙ୍ଗିତାକୃତୀ ॥
[୭] କିଂଶାରୁର୍ଧାନ୍ୟଶୂକେଷୁ [୮] ମରୂ ଧନ୍ୱଧରାଧରୌ ।
[୯] ଅଦ୍ରୟୋ ଦ୍ରୁମଶୈଳାର୍କାଃ [୧୦] ସ୍ତ୍ରୀସ୍ତନାବ୍ଦୌ ପୟୋଧରୌ ॥
[୧୧] ଧ୍ୱାନ୍ତାରି ଦାନବା ବୃତ୍ରା [୧୨] ବଳିହସ୍ତାଂଶବଃ କରାଃ ।
[୧୩] ପ୍ରଦରା ଭଙ୍ଗନାରୀରୁଗ୍ବାଣା [୧୪] ଅସ୍ରାଃ କଚା ଅପି ॥
[୧୫] ଅଜାତଶୃଙ୍ଗୋ ଗୌଃ କାଲେ ଽପ୍ୟଶ୍ମଶ୍ରୁର୍ନା ଚ ତୂବରଃ ।

---

### ଭନ୍ତ୍ରବର୍ତ୍ତିଃ ।

୧ । ସମୂହ । ଅବସର ଏ ଦୁହିଙ୍କି ବାର ବୋଲାଯାଏ ।
୨ । ପ୍ରସ୍ତର । ଯଜ୍ଞ ଏ ଦୁହିଙ୍କି ସ୍ତର ବୋଲାଯାଏ ।
୩ । ବୃହସ୍ପତି । ପିତୃଆଦି ଏମାନଙ୍କୁ ଗୁରୁ କହି ।
୪ । ଯୁଗବିଶେଷ । ସଂଶୟ ଏ ଦୁହିଙ୍କି ଦ୍ୱାପର କହି ।
୫ । ଭେଦ । ସାଦୃଶ୍ୟ ଏ ଦୁହିଙ୍କି ପ୍ରକାର ବୋଲି ।
୬ ଇଙ୍ଗିତ । ଆକୃତି ଏ ଦୁହିଙ୍କି ଆକାର କହି ।
୭ । ଧାନ୍ୟଶୂକ  ବାଣ ଏ ଦୁହିଙ୍କି କିଂଶାରୁ କହି ।
୮ । ନିର୍ଜଳପ୍ରଦେଶ । ପର୍ବତ ଏ ଦୁହିଙ୍କି ମରୁ ବୋଲି ।
୯ । ବୃକ୍ଷ । ପର୍ବତ । ସୂର୍ଯ୍ୟ ଏମାନଙ୍କୁ ଅଦ୍ରି ବୋଲାଯାଏ ।
୧୦ । ସ୍ତ୍ରୀଙ୍କର ସ୍ତନ । ମେଘ ଏ ଦୁହିଙ୍କି ପୟୋଧର କହି ।
୧୧ । ଅନ୍ଧକାର । ଶତ୍ରୁ । ଅସୁର ଏମାନଙ୍କୁ ବୃତ୍ର କହି ।
୧୨ । ରାଜକର । ହସ୍ତ । କିରଣ ଏମାନଙ୍କୁ କର ବୋଲି ।
୧୩ । ଫାଟିଯିବା । ନାରୀମାନଙ୍କର ରୋଗବିଶେଷ । ବାଣ ଏମାନଙ୍କୁ ପ୍ରଦର କହି ।
୧୪ । କେଶମାନଙ୍କୁ ଅସ୍ର କହି ।
୧୫ । ଯଥାସମୟରେ ଶୃଙ୍ଗ ଜାତ ହେବା ଗୋ । ଶ୍ମଶ୍ରୁହୀନ ପୁରୁଷ ଏ ଦୁହିଙ୍କି ତୂବର [କହି ।

[୧] ସ୍ୱର୍ଣ୍ଣେଽପି ରାଃ [୨] ପରିକରଃ ପର୍ଯ୍ୟଙ୍କପରିବାରୟୋଃ ।
[୩] ମୁକ୍ତାଶୁଦ୍ଧୌ ଚ ତାରଃ ସ୍ୟା [୪] ଚ୍ଛାରୋ ବାୟୌ ସ ତୁ ତ୍ରିଷୁ
[୫] କର୍ବୁରେଽଥ ପ୍ରତିଜ୍ଞାଜିସମ୍ବିଦାପତ୍ସୁ ସଙ୍ଗରଃ ॥
[୬] ବେଦଭେଦେ ଗୁପ୍ତବାଦେ ମନ୍ତ୍ରୋ [୭] ମିତ୍ରୋ ରବାବପି ।
[୮] ମଖେଷୁ ଯୂପଖଣ୍ଡେଽପି ସ୍ୱରୁ [୯] ର୍ଗୁହ୍ୟେଽପ୍ୟବସ୍କରଃ ॥
[୧୦] ଆଡମ୍ବରସ୍ତୂର୍ଯ୍ୟରବେ ଗଜେନ୍ଦ୍ରାଣାଂ ଚ ଗର୍ଜିତେ ।
[୧୧] ଅଭିହାରୋଽଭିଯୋଗେ ଚ ଚୌର୍ଯ୍ୟେ ସନ୍ନହନେଽପି ଚ ॥
[୧୨] ସ୍ୟାଜ୍ଜଙ୍ଗମେ ପରୀବାରଃ ଖଡ୍ଗକୋଶେ ପରିଚ୍ଛଦେ ।
[୧୩] ବିଷ୍ଟରୋ ବିଟପୀ ଦର୍ଭମୁଷ୍ଟିଃ ପୀଠାଦ୍ୟମାସନଂ ॥
[୧୪] ଦ୍ୱାରି ଦ୍ୱାଃସ୍ଥେ ପ୍ରତୀହାରଃ ପ୍ରତୀହାର୍ଯ୍ୟପ୍ୟନନ୍ତରେ ।

---

୧ । ସୁର୍ଣ୍ଣକୁ ରୈ ବୋଲୁଥାଏ । ୨ । ପର୍ଯ୍ୟଙ୍କ । ପରିବାର ଏ ଦୁହିଙ୍କି ପରିକର କହି ।
୩ । ମୁକ୍ତାର ଶୌକ୍ଲ୍ୟକୁ ତାର କହି ।
୪ । ବାୟୁ । କର୍ବୁରବର୍ଣ୍ଣ ଏ ଦୁହିଙ୍କି ସାର କହି ।
୫ । ପ୍ରତିଜ୍ଞା । ଯୁଦ୍ଧ । ଜ୍ଞାନ । ଆପଦ୍ ଏମାନଙ୍କୁ ସଙ୍ଗର କହି ।
୬ । ବେଦବିଶେଷ । ଗୁପ୍ତିବାଦ ଏ ଦୁହିଙ୍କି ମନ୍ତ୍ର କହି ।
୭ । ସୂର୍ଯ୍ୟ । ସୁହୃଦ ଏ ଦୁହିଙ୍କି ମିତ୍ର କହି ।
୮ । ଯଜ୍ଞ । ବାଣ । ଯଜ୍ଞକାଷ୍ଠଖଣ୍ଡ ଏମାନଙ୍କୁ ସ୍ୱରୁ କହି ।
୯ । ଗୋପନୀୟକୁ ଅବସ୍କର ବୋଲୁଥାଏ ।
୧୦ । ତୂର୍ଯ୍ୟାଦି ବାଦ୍ୟରବ । ହସ୍ତିଗର୍ଜ୍ଜନ ଏ ଦୁହିଙ୍କି ଆଡମ୍ବର କହି ।
୧୧ । ଅଭିଯୋଗ । ଚୌର୍ଯ୍ୟ । ସନ୍ନହନ ଅର୍ଥାତ୍ ବନ୍ଧନ ଏମାନଙ୍କୁ ଅଭିହାର କହି ।
୧୨ । ଅନୁଚର । ଖଡ୍ଗକୋଷ । ପରିଚ୍ଛଦ ଏମାନଙ୍କୁ ପରିବାର କହି ।
୧୩ । ବୃକ୍ଷ । କୁଶମୁଷ୍ଟି । ପୀଠାଦିଆସନ ଏମାନଙ୍କୁ ବିଷ୍ଟର କହି ।
୧୪ । ଦ୍ୱାର । ଦ୍ୱାଃସ୍ଥ ଅର୍ଥାତ୍ ଦ୍ୱାରରକ୍ଷକ । ଏ ଦୁହିଙ୍କି ପ୍ରତୀହାର ବୋଲି ଏବଂ ପ୍ରତୀହାରୀ ବୋଲି ।

[୧] ବପ୍ରୌଲେ ନକୁଲେ ବଭ୍ରୌ ବଭ୍ରୁଃ ସ୍ୟାତ୍ ପିଙ୍ଗଲେ ତ୍ରିଷୁ ।
[୨] ସାରୋ ବଲେ ସ୍ଥିରାଂଶେ ଚ ନ୍ୟାଯ୍ୟେ କ୍ଲୀବଂ ବରେ ତ୍ରିଷୁ ।
[୩] ଦୁରୋଦରୋ ଦ୍ୟୂତକାରେ ପଣେ ଦ୍ୟୂତେ ଦୁରୋଦରଂ ।
[୪] ମହାରଣ୍ୟେ ଦୁର୍ଗପଥେ କାନ୍ତାରଃ ପୁଂ ନପୁଂସକଂ ।
[୫] ମସ୍ତରୋ ନ୍ୟଂ ଶୁଭଦ୍ଵେଷେ ତଦ୍ଵତ୍ କୃପଣଯୋସ୍ତ୍ରିଷୁ ।
[୬] ଦେବାଦ୍ବୃତେ ବରଃ ଶ୍ରେଷ୍ଠେ ତ୍ରିଷୁ କ୍ଲୀବେ ମନାକ୍ ପ୍ରିୟେ ।
[୭] ବଂଶାଙ୍କୁରେ କରୀରୋ ସ୍ତ୍ରୀ ତରୁଭେଦେ ଘଟେ ଚ ନା ।
[୮] ନା ଚମୂଜଘନେ ହସ୍ତସୂତ୍ରେ ପ୍ରତିସରୋ ସ୍ତ୍ରିୟାଂ ।
[୯] ଯମାନିଲେନ୍ଦ୍ରଚନ୍ଦ୍ରାର୍କବିଷ୍ଣୁ ସିଂହାଂଶୁବାଜିଷୁ ।
ଶୁକାହିକପିଭେକେଷୁ ହରିର୍ନା କପିଲେ ତ୍ରିଷୁ ।
[୧୦] ଶର୍କରା କର୍ପରାଂଶେ ପି [୧୧] ଯାତ୍ରା ସ୍ୟାଦ୍ୟାପନେ ଗତୌ ।
[୧୨] ଇରା ଭୂବାକ୍ସୁରାପ୍ସୁ ସ୍ୟା [୧୩] ତ୍ତନ୍ଦ୍ରୀ ନିଦ୍ରାପ୍ରମୀଲୟୋଃ ।

---

୧ । ବପ୍ରୁ । ନକୁଳ । ବହ୍ନି । ପିଙ୍ଗଳବର୍ଣ୍ଣ ଏମାନଙ୍କୁ ବଭ୍ରୁ କହି ।
୨ । ବଳ । ସ୍ଥିରାଂଶ । ନ୍ୟାଯ୍ୟ । ଶ୍ରେଷ୍ଠ ଏମାନଙ୍କୁ ସାର ବୋଲି ।
୩ । ଦ୍ୟୂତକାର । ଅର୍ଥାତ୍ ଜୁଆରୀ । ପଣ । ଜୁଆଖେଳ ଏମାନଙ୍କୁ ଦୁରୋଦର ବୋଲି ।
୪ । ମହାରଣ୍ୟ । ଦୁର୍ଗପଥ ଏ ଦୁହିଙ୍କି କାନ୍ତାର ବୋଲି ।
୫ । ଅନ୍ୟର ଶୁଭଦ୍ଵେଷ । ମାତ୍ସର୍ଯ୍ୟ ବିଶିଷ୍ଟ । କୃପଣ ଏମାନଙ୍କୁ ମତ୍ସର କହି ।
୬ । ଦେବତାଙ୍କଠାରୁ ବରଣୀୟ । ଶ୍ରେଷ୍ଠ । ଈଷତ୍‌ପ୍ରିୟ ଏମାନଙ୍କୁ ବର କହି ।
୭ । ବଂଶଗଜା । ବୃକ୍ଷବିଶେଷ ଘଟ ଏମାନଙ୍କୁ କରୀର କହି ।
୮ । ସେନାରପଶ୍ଚାଦ୍ଭାଗ । ହସ୍ତସୂତ୍ର । ଏ ଦୁହିଙ୍କି ପ୍ରତିସର କହି ।
୯ । ଯମ । ବାୟୁ । ଇନ୍ଦ୍ର । ଚନ୍ଦ୍ର । ସୂର୍ଯ୍ୟ । ବିଷ୍ଣୁ । ସିଂହ । କିରଣ । ଘୋଡ଼ା । ଶୁକପକ୍ଷୀ ସର୍ପ । ବାନର । ଭେକ । କପିଳବର୍ଣ୍ଣ ଏମାନଙ୍କୁ ହରି କହି ।
୧୦ । କର୍ପରାଂଶ ଅର୍ଥାତ୍ ଖପରର ଅଂଶକୁ ଶର୍କରା ବୋଲାଯାଏ ।
୧୧ । ଯାପନ । ଗତି ଏ ଦୁହିଙ୍କି ଯାତ୍ରା ବୋଲାଯାଏ ।
୧୨ । ପୃଥିବୀ । ବାକ୍ୟ । ସୁରା । ଜଳ ଏମାନଙ୍କୁ ଇରା କହି ।
୧୩ । ନିଦ୍ରା ପ୍ରମୀଳନ । ଏ ଦୁହିଙ୍କି ତନ୍ଦ୍ରୀ କହି ।

[୧] ଧାତ୍ରୀ ସ୍ୟାଦୁପମାତାପି କ୍ଷିତିରପ୍ୟାମଲକ୍ୟପି ।

[୨] କ୍ଷୁଦ୍ରା ବ୍ୟଙ୍ଗା ନଟୀ ବେଶ୍ୟା ସରଘା କଣ୍ଟକାରିକା ।

[୩] ତ୍ରିଷୁ କ୍ରୂରେଽଧମେଽଲ୍ପେଽପି କ୍ଷୁଦ୍ରୋ [୪] ମାତ୍ରା ପରିଚ୍ଛଦେ ।
ଅଲ୍ପେ ଚ ପରିମାଣେ ସା [୫] ମାତ୍ରଂ କାର୍ତ୍ସ୍ନ୍ୟେଽବଧାରଣେ

[୬] ଆଲେଖ୍ୟାଶ୍ଚର୍ଯ୍ୟୟୋଶ୍ଚିତ୍ରଂ [୭] କଳତ୍ରଂ ଶ୍ରୋଣି ଭାର୍ଯ୍ୟୟୋଃ ।

[୮] ଯୋଗ୍ୟଭାଜନୟୋଃ ପାତ୍ରଂ [୯] ପତ୍ରଂ ବାହନପକ୍ଷୟୋଃ ।

[୧୦] ନିଦେଶଗ୍ରନ୍ଥୟୋଃ ଶାସ୍ତ୍ରଂ [୧୧] ଶସ୍ତ୍ରମାୟୁଧଲୋହୟୋଃ ।

[୧୨] ସ୍ୟାଜ୍ଜଟାଂଶୁକୟୋର୍ନେତ୍ରଂ [୧୩] କ୍ଷେତ୍ରଂ ପତ୍ନୀଶରୀରୟୋଃ ।

[୧୪] ମୁଖାଗ୍ରେ କ୍ରୋଡ଼ହଳୟୋଃ ପୋତ୍ରଂ [୧୫] ଗୋତ୍ରଂ ତୁ ନାମ୍ନି ଚ

---

୧ । ଉପମାତା ଅର୍ଥାତ୍ ଧାଈମାଆ । ପୃଥିବୀ । ଅଁଳା ଏମାନଙ୍କୁ ଧାତ୍ରୀ କହି ।

୨ । ଟେକଲାଙ୍ଗ । ନଟୀ । ବେଶ୍ୟା । ମହୁମାଛି । କଣ୍ଟକାରୀ ଏମାନଙ୍କୁ କ୍ଷୁଦ୍ରା କହି ।

୩ । କ୍ରୂର । ଅଧମ । ଅଳ୍ପ ଏମାନଙ୍କୁ କ୍ଷୁଦ୍ର କହି ।

୪ । ପରିଚ୍ଛଦ । ଅଳ୍ପ । ପରିମାଣ ଏମାନଙ୍କୁ ମାତ୍ରା କହି ।

୫ । ସମଗ୍ର । ଅବଧାରଣ ଏ ଦୁହିଙ୍କି ମାତ୍ର କହି ।

୬ । ଆଲେଖ୍ୟ । ଆଶ୍ଚର୍ଯ୍ୟ ଏ ଦୁହିଙ୍କି ଚିତ୍ର ବୋଲଯାଏ ।

୭ । କଟିଦେଶ । ଭାର୍ଯ୍ୟା ଏ ଦୁହିଙ୍କି କଳତ୍ର କହି ।

୮ । ଯୋଗ୍ୟ । ଭାଜନ ଏ ଦୁହିଙ୍କି ପାତ୍ର କହି ।

୯ । ଅଶ୍ୱାଦିବାହନ । ପକ୍ଷ ଏ ଦୁହିଙ୍କି ପତ୍ର କହି ।

୧୦ । ଆଜ୍ଞା । ବ୍ୟାକରଣାଦିଗ୍ରନ୍ଥ ଏ ଦୁହିଙ୍କି ଶାସ୍ତ୍ର କହି ।

୧୧ । ଖଡ୍ଗାଦିଅସ୍ତ୍ର । ଲୌହ ଏ ଦୁହିଙ୍କି ଶସ୍ତ୍ର କହି ।

୧୨ । ଜଟା । ଅଂଶୁକ ( ବସ୍ତ୍ର ) ଏ ଦୁହିଙ୍କି ନେତ୍ର କହି ।

୧୩ । ପତ୍ନୀ । ଶରୀର ଏ ଦୁହିଙ୍କି କ୍ଷେତ୍ର କହି ।

୧୪ । ମୁଖାଗ୍ର । କ୍ରୋଡ଼ । ହଳ ଏମାନଙ୍କୁ ପୋତ୍ର କହି ।

୧୫ । ନାମ । କୁଳ ଏ ଦୁହିଙ୍କି ଗୋତ୍ର କହି ।

[୧] ସତ୍ରମାଚ୍ଛାଦନେ ଯଜ୍ଞେ ସଦାଦାନେ ବନେ ଽପି ଚ ।
[୨] ଅଜିରଂ ବିଷୟେ କାୟେ ଽପ୍ୟ [୩] ମ୍ବରଂ ବ୍ୟୋମ୍ନି ବାସସି ॥
[୪] ଚକ୍ରଂ ରାଷ୍ଟ୍ରେ ଽପ୍ୟ[୫]କ୍ଷରଂ ତୁ ମୋକ୍ଷେ ଽପି [୬] କ୍ଷୀରମପ୍ସୁ ଚ ।
[୭।୮] ସ୍ୱର୍ଣ୍ଣେ ଽପି ଭୂରିଚନ୍ଦ୍ରୌ ଦ୍ୱୌ [୯] ଦ୍ୱାରମାତ୍ରେ ଽପି ଗୋପୁରଂ ॥
[୧୦] ଗୁହାଦମ୍ଭୌ ଗହ୍ୱରେ ଦ୍ୱେ [୧୧] ରହୋ ଽନ୍ତିକମୁପହ୍ୱରେ ।
[୧୨] ପୁରୋ ଽଧିକମୁପର୍ଯ୍ୟଗ୍ରାଣ୍ୟ [୧୩] ଗାରେ ନଗରେ ପୁରଂ ॥
[୧୪] ମନ୍ଦିରଂ ଚ [୧୫] ରାଷ୍ଟ୍ରୋ ଽସ୍ତ୍ରୀ ବିଷୟେ ସ୍ୟାଦୁପଦ୍ରବେ ।
[୧୬] ଦରୋ ଽସ୍ତ୍ରୀୟାଂ ଭୟେ ଶ୍ୱଭ୍ରେ [୧୭] ବଜ୍ରୋ ଽସ୍ତ୍ରୀ ହୀରକପବୌ
[୧୮] ତନ୍ତ୍ରଂ ପ୍ରଧାନେ ସିଦ୍ଧାନ୍ତେ ସୂତ୍ରବାପେ ପରିଚ୍ଛଦେ ।
[୧୯] ଔଶୀରଶ୍ଚାମରେ ଦଣ୍ଡେ ଽପ୍ୟୌଶୀରଂ ଶୟନାସନେ ॥

---

୧ । ଆଚ୍ଛାଦନ । ଯଜ୍ଞ । ସଦାଦାନ । ବନ ଏମାନଙ୍କୁ ସତ୍ର କହି ।
୨ । ବିଷୟ ଅର୍ଥାତ୍ ଭୂଭାଗ । ଶରୀର । ଅଙ୍ଗଣ ଏମାନଙ୍କୁ ଅଜିର କହି ।
୩ । ଆକାଶ । ବସ୍ତ୍ର ଏ ଦୁହିଙ୍କି ଅମ୍ବର କହି ।
୪ । ରାଷ୍ଟ୍ରକୁ ଚକ୍ର କହି । ୫ । ମୋକ୍ଷକୁ ଅକ୍ଷର କହି ।
୬ । ଜଳକୁ କ୍ଷୀର କହି । ୭ । ସ୍ୱର୍ଣ୍ଣକୁ ଭୂରି କହି ।
୮ । ନିଶାକର । ସ୍ୱର୍ଣ୍ଣ ଏ ଦୁହିଙ୍କି ଚନ୍ଦ୍ର କହି । ୯ । ଦ୍ୱାରମାନଙ୍କୁ ଗୋପୁର କହି ।
୧୦ । ଗୁହା । ଦମ୍ଭ ଏହୁହିଙ୍କି ଗହ୍ୱର କହି ।
୧୧ । ଗୋପନସ୍ଥାନ । ନିକଟ ଏ ଦୁହିଙ୍କି ଉପହ୍ୱର କହି ।
୧୨ । ସମ୍ମୁଖ । ଅଧିକ । ଉପର ଏମାନଙ୍କୁ ଅଗ୍ର କହି ।
୧୩ । ଗୃହ । ନଗର ଏଦୁହିଙ୍କି ପୁର କହି । ୧୪ । ଅଗାର । ନଗର ଏଦୁହିଙ୍କି ମନ୍ଦିର କହି
୧୫ । ସମୁଦାୟଦେଶ । ଉପଦ୍ରବ ଏ ଦୁହିଙ୍କି ରାଷ୍ଟ୍ର କହି ।
୧୬ । ଭୟ । ଗର୍ତ୍ତ ଏ ଦୁହିଙ୍କି ଦର କହି ।
୧୭ । ହୀରା । ଅଶନି ଏ ଦୁହିଙ୍କି ବଜ୍ର କହି ।
୧୮ । ପ୍ରଧାନ । ସିଦ୍ଧାନ୍ତ । ସୂତ୍ରବାପ ଅର୍ଥାତ୍ ତନ୍ତ ପରିଚ୍ଛଦ ଏମାନଙ୍କୁ ତନ୍ତ୍ର କହି ।
୧୯ । ଚାମର । ଦଣ୍ଡ । ଶଯ୍ୟା । ଆସନ ଏମାନଙ୍କୁ ଔଶୀର କହି ।

[୧] ପୁଷ୍କରଂ କରିହସ୍ତାଗ୍ରେ ବାଦ୍ୟଭାଣ୍ଡମୁଖେ ଜଲେ ।
ବ୍ୟୋମ୍ନି ଖଡ୍ଗଫଲେ ପଦ୍ମେ ତୀର୍ଥୌଷଧିବିଶେଷୟୋଃ ॥
[୨] ଅନ୍ତରମବକାଶାବଧିପରିଧାନାନ୍ତର୍ଦ୍ଧିଭେଦତାଦର୍ଥ୍ୟେ ।
ଛିଦ୍ରାତ୍ମୀୟବିନାବହିରବସର ମଧ୍ୟେଽନ୍ତରାତ୍ମନି ଚ ॥
[୩] ମୁସ୍ତେଽପି ପିଠରଂ [୪] ରାଜକଶେରୁଣ୍ୟପି ନାଗରଂ ।
[୫] ଶାର୍ବରଂ ତ୍ୱନ୍ଧତମସେ ଘାତୁକେ ଭେଦ୍ୟଲିଙ୍ଗକଃ ॥
[୬] ଗୌରୋଽରୁଣେ ସିତେ ପୀତେ [୭] ବ୍ରଣକାର୍ଯ୍ୟେଽପ୍ୟରୁଷ୍କରଃ
[୮] ଜଠରଃ କଠିନେଽପି ସ୍ୟା [୯] ଦଧସ୍ତାଦପି ଚାଧରଃ ।
[୧୦] ଅନାକୁଲେଽପି ଚୈକାଗ୍ରୋ [୧୧] ବ୍ୟଗ୍ରୋ ବ୍ୟାସକ୍ତ ଆକୁଲେ
[୧୨] ଉପର୍ଯ୍ୟୁଦୀଚ୍ୟଶ୍ରେଷ୍ଠେଷ୍ୱପ୍ୟୁତ୍ତରଃ [୧୩] ସ୍ୟାଦନୁତ୍ତରଃ ।
ଏଷାଂ ବିପର୍ଯ୍ୟୟେ ଶ୍ରେଷ୍ଠେ [୧୪] ଦୂରାନାତ୍ମୋତ୍ତମାଃ ପରାଃ

---

୧ । ହସ୍ତୀର ଶୁଣ୍ଡାଗ୍ର । ବାଦ୍ୟଭାଣ୍ଡମୁଖ । ଜଳ । ଆକାଶ । ଖଡ୍ଗ । ଫଳକ । ପଦ୍ମ । ତୀର୍ଥ । ଔଷଧିବିଶେଷ ଏମାନଙ୍କୁ ପୁଷ୍କର କହି ।

୨ । ଅବକାଶ । ଅବଧି । ପରିଧାନ । ଅନ୍ତର୍ଦ୍ଧାନ । ଭେଦ । ତାଦର୍ଥ୍ୟ । ଛିଦ୍ର । ଆତ୍ମୀୟ । ବିନା । ବହିଃ । ଅବସର । ମଧ୍ୟ । ଅନ୍ତରାତ୍ମା ଏମାନଙ୍କୁ ଅନ୍ତର କହି ।

୩ । ମୁଥା । କଶେରୁ ( ଘାସବିଶେଷ ) ଏ ଦୁହିଙ୍କି ପିଠର କହି ।

୪ । ନଗରବାସୀ । ନାଗର ମୁଥା ଏ ଦୁହିଙ୍କି ନାଗର କହି ।

୫ । ମହାନ୍ଧକାର । ଘାତକ ଏ ଦୁହିଙ୍କି ଶାର୍ବର କହି ।

୬ । ଅରୁଣ । ଶୁକ୍ଳ । ପୀତ ଏମାନଙ୍କୁ ଗୌର କହି ।

୭ । ପୀଡ଼ାଦାୟକ । ବ୍ରଣକାର୍ଯ୍ୟ ଏ ଦୁହିଙ୍କି ଅରୁଷ୍କର କହି

୮ । ଉଦର । କଠିନ ଏ ଦୁହିଙ୍କି ଜଠର କହି ।

୯ । ଅଧୋଭାଗ । ନମ୍ରଓଷ୍ଠ ଏ ଦୁହିଙ୍କି ଅଧର କହି   ୧୦ । ଅନାକୁଳକୁ ଏକାଗ୍ର କହି ।

୧୧ । ବିଶେଷରୂପେ ଆସକ୍ତ । ଆକୁଳ ଏ ଦୁହିଙ୍କି ବ୍ୟଗ୍ର କହି

୧୨ । ଉପରେ । ଉତ୍ତରଦିଗ । ଶ୍ରେଷ୍ଠ ଏମାନଙ୍କୁ ଉତ୍ତର କହି ।

୧୩ । ଉତ୍ତରରହିତରୁ ଭିନ୍ନ । ଅଧମ । ଶ୍ରେଷ୍ଠ ଏମାନଙ୍କୁ ଅନୁତ୍ତର କହି ।

୧୪ । ଦୂର । ଅନାତ୍ମା । ଉତ୍ତମ ଏମାନଙ୍କୁ ପର କହି ।

[୧] ସ୍ୱାଦୁପ୍ରିୟୌ ତୁ ମଧୁରୌ [୨] କ୍ରୂରୌ କଠିନନିର୍ଦ୍ଦୟୌ ।
[୩] ଉଦାରୋ ଦାତୃମହତୋ [୪] ଇତରସ୍ତ୍ୱନ୍ୟନୀଚୟୋଃ ।
[୫] ମନ୍ଦସ୍ୱଚ୍ଛନ୍ଦୟୋଃ ସ୍ୱୈରଃ [୬] ଶୁଭ୍ରମୁଦ୍ଦୀପ୍ତଶୁକ୍ଲୟୋଃ ।

ଲାନ୍ତାଃ ।

[୧] ଚୂଡା କିରୀଟଂ କେଶାଶ୍ଚ ସଂଯତା ମୌଳୟସ୍ତ୍ରୟଃ
[୨] ଦ୍ରୁମପ୍ରଭେଦମାତଙ୍ଗକାଣ୍ଡପୁଷ୍ପାଣି ପୀଲବଃ ।
[୩] କୃତାନ୍ତାନେହସୋଃ କାଳ [୪] ଚତୁର୍ଥେଽପି ଯୁଗେ କଳିଃ ।
[୫] ସ୍ୟାତ୍ କୁରଙ୍ଗେଽପି କମଳଃ [୬] ପ୍ରାବାରେଽପି ଚ କମ୍ବଳଃ
[୭] କରୋପହାରୟୋଃ ପୁଂସି ବଳିଃ ପ୍ରାଣ୍ୟଙ୍ଗଜେ ସ୍ତ୍ରିୟାଂ ।
[୮] ସ୍ଥୌଲ୍ୟସାମର୍ଥ୍ୟସୈନ୍ୟେଷୁ ବଳଂ ନା କାକସୀରିଣୋଃ ।
[୯] ବାତୂଳଃ ପୁଂସି ବାତ୍ୟାୟାମପି ବାତସହେ ତ୍ରିଷୁ ।

---

୧ । ସ୍ୱାଦୁ । ପ୍ରିୟ ଏ ଦୁହିଙ୍କି ମଧୁର କହି ।
୨ । କଠିନ । ନିର୍ଦ୍ଦୟ ଏ ଦୁହିଙ୍କି କ୍ରୂର କହି ।
୩ । ଦାତା । ମହତ୍ ଏ ଦୁହିଙ୍କି ଉଦାର କହି ।
୪ । ଅନ୍ୟ । ନୀଚ ଏ ଦୁହିଙ୍କି ଇତର କହି ।
୫ । ମନ୍ଦ । ସ୍ୱଚ୍ଛନ୍ଦ ଏ ଦୁହିଙ୍କି ସ୍ୱୈର କହି ।
୬ । ଉଦ୍ଦୀପ୍ତ । ଶୁକ୍ଳ ଏ ଦୁହିଙ୍କି ଶୁଭ୍ର କହି ।

ଲାନ୍ତବର୍ଗେ ।

୧ । ଚୂଡା । କିରୀଟ । ସଂଯତକେଶ । ମସ୍ତକ ଏମାନଙ୍କୁ ମୌଳି କହି ।
୨ । ବୃକ୍ଷବିଶେଷ । ହସ୍ତୀ । ଶର । ପୁଷ୍ପ ଏମାନଙ୍କୁ ପିଲୁ କହି ।
୩ । ଯମ । ସମସ୍ତବିଧ କାଳବିଶେଷ ଏ ଦୁହିଙ୍କି କାଳ କହି ।
୪ । କଳହ । ଚତୁର୍ଥଯୁଗ ଏ ଦୁହିଙ୍କି କଳି କହି । ୫ । ମୃଗକୁ କମଳ କହି ।
୬ । ଅବରଣବସ୍ତ୍ରକୁ ଅର୍ଥାତ୍ ଲୋମଜାତ ଅସନବିଶେଷକୁ କମ୍ବଳ କହି । ୧ [ ବୋଲ ।
୭ । ରାଜସ୍ୱ । ପୂଜାର ଉପକରଣ । ଦୈତ୍ୟବିଶେଷ । ପ୍ରାଣିର ଅଙ୍ଗଜାତ ଏମାନଙ୍କୁ ବଳି
୮ । ସ୍ଥୂଳତା । ସାମର୍ଥ୍ୟ । ସୈନ୍ୟ । କାକ । ବଳରାମ ଏମାନଙ୍କୁ ବଳ କହି ।
୯ । ବାତସମୂହ । ବାତ୍ୟା । ଉନ୍ମତ୍ତ । ବାତସହ ଏମାନଙ୍କୁ ବାତୂଳ କହି ।

[୧] ଭେଦ୍ୟଲିଙ୍ଗଃ ଶଠେ ବ୍ୟାଳଃ ପୁଂସି ଶ୍ୱାପଦସର୍ପୟୋଃ ।
[୨] ମଲୋଽସ୍ତ୍ରୀ ପାପବିଟ୍‌କିଟ୍ଟାନ୍ୟସ୍ତ୍ରୀ [୩] ଶୂଳଂ ରୁଗାୟୁଧଂ ।
[୪] ଶଙ୍କାବପି ଦ୍ୱୟୋଃ କୀଳ [୫] ପାଳିଃ ସ୍ତ୍ର୍ୟଶ୍ର୍ୟଙ୍କପଂକ୍ତିଷୁ ॥
[୬] କଳା ଶିଳ୍ପେ କାଳଭେଦେଽପ୍ୟା [୭] ଳୀ ସଖ୍ୟାବଳୀ ଅପି ।
[୮] ଅବ୍‌ଧ୍ୟମ୍ବୁବିକୃତୌ ବେଳା କାଳମର୍ଯ୍ୟାଦୟୋରପି ।
[୯] ବହୁଳାଃ କୃତ୍ତିକା ଗାବୋ [୧୦] ବହୁଳୋଽଗ୍ନୌ ଶିତୌ ତ୍ରିଷୁ ।
[୧୧] ଲୀଳା ବିଳାସକ୍ରିୟୟୋ [୧୨] ରୁପଳା ଶର୍କରାପି ଚ ।
[୧୩] ଶୋଣିତେଽମ୍ଭସି କୀଲାଳଂ [୧୪] ମୂଳମାଦ୍ୟେ ଶିଫାଭୟୋଃ ।
[୧୫] ଜାଳଂ ସମୂହ ଆନାୟୋଽଗବାକ୍ଷକ୍ଷାରକାବପି ॥
[୧୬] ଶୀଳଂ ସ୍ୱଭାବେ ସଦ୍‌ବୃତ୍ତେ [୧୭] ସସ୍ୟେ ହେତୁକୃତେ ଫଳଂ

---

୧ । ହିଂସ୍ରଜନ୍ତୁ । ସର୍ପ । ଶଠ ଏମାନଙ୍କୁ ବ୍ୟାଳ କହି ।
୨ । ପାପ । ବିଷ୍ଠା । କିଟ୍ଟ ଏମାନଙ୍କୁ ମଳ କହି ।
୩ । ରୋଗବିଶେଷ । ଅସ୍ତ୍ରବିଶେଷ ଏ ଦୁହିଁଙ୍କି ଶୂଳ କହି ।
୪ । ଶଙ୍କୁ । ଗୋଞ୍ଜ ଏ ଦୁହିଁଙ୍କି କୀଳ ବୋଲି ।
୫ । କୋଣ । ଅଙ୍କ । ପଂକ୍ତି ଏମାନଙ୍କୁ ପାଳି କହି ।
୬ । ଶିଳ୍ପ । କାଳବିଶେଷ ଏ ଦୁହିଁଙ୍କି କଳା ବୋଲାଯାଏ ।
୭ । ସଖୀ । ପଂକ୍ତି ଏ ଦୁହିଁଙ୍କି ଆଳୀ ବୋଲାଯାଏ ।
୮ । ସମୁଦ୍ରର ଜଳବୃଦ୍ଧି । କାଳ । ସୀମା ଏମାନଙ୍କୁ ବେଳା କହି ।
୯ । କୃତ୍ତିକା । ଗୋ ଅର୍ଥାତ୍ ଧେନୁ ଏ ଦୁହିଁଙ୍କି ବହୁଳା କହି ।
୧୦ । ଅଗ୍ନି । ଶୁକ୍ଳ ଏ ଦୁହିଁଙ୍କି ବହୁଳ କହି ।
୧୧ । କ୍ରୀଡା । ଶୃଙ୍ଗାରଜ ଚେଷ୍ଟା ଏ ଦୁହିଁଙ୍କି ଲୀଳା କହି ।
୧୨ । ଶିଳା । ଶର୍କରା ଏ ଦୁହିଁଙ୍କି ଉପଳା କହି । ୧୩ । ରକ୍ତ । ଜଳ ଏ ଦୁହିଁଙ୍କି କୀଲାଳ କହି
୧୪ । ଆଦ୍ୟ ଚେର । ନକ୍ଷତ୍ରବିଶେଷ ଏମାନଙ୍କୁ ମୂଳ କହି ।
୧୫ । ସମୂହ । ମତ୍ସ୍ୟାଦିମାରଣଯନ୍ତ୍ର । ଗବାକ୍ଷ । ଖାରକ ଏମାନଙ୍କୁ ଜାଳ କହି ।
୧୬ । ସ୍ୱଭାବ । ସଦ୍‌ବୃତ୍ତ ଏ ଦୁହିଁଙ୍କି ଶୀଳ କହି ।
୧୭ । ଶସ୍ୟ । ହେତୁକୃତ ଏ ଦୁହିଁଙ୍କି ଫଳ କହି ।

[୧] ଛଦିର୍ନେତ୍ରରୁଜୋଃ କ୍ଳୀବ ସମୂହେ ପଟଲଂ ନ ନା ॥
[୨] ଅଧଃ ସ୍ୱରୂପୟୋରସ୍ତ୍ରୀ ତଲଂ [୩] ସ୍ୟାଚ୍ଚାମିଷେ ପଲଂ ।
[୪] ଔର୍ବାନଲେଽପି ପାତାଲଂ [୫] ଚେଲଂ ବସ୍ତ୍ରେଽଧମେ ତ୍ରିଷୁ ॥
[୬] କୁକୂଲଂ ଶଙ୍କୁଭିଃ କୀର୍ଣ୍ଣେ ଶ୍ୱଭ୍ରେ ନା ତୁ ତୁଷାନଲେ ।
[୭] ନିର୍ଣ୍ଣୀତେ କେବଲମିତି ତ୍ରିଲିଙ୍ଗଂ ତ୍ୱେକକୃତ୍ସ୍ନୟୋଃ ॥
[୮] ପର୍ଯ୍ୟାପ୍ତି କ୍ଷେମପୁଣ୍ୟେଷୁ କୁଶଲଂ ଶିକ୍ଷିତେ ତ୍ରିଷୁ ।
[୯] ପ୍ରବାଲମଙ୍କୁରେଽପ୍ୟସ୍ତ୍ରୀ ତ୍ରିଷୁ [୧୦] ସ୍ଥୂଲଂ ଜଡେଽପି ଚ ॥
[୧୧] କରାଲୋ ଦନ୍ତୁରେ ତୁଙ୍ଗେ [୧୨] ଚାରୌ ଦକ୍ଷେ ଚ ପେଶଲଃ
[୧୩] ମୂର୍ଖେଽର୍ଭକେଽପି ବାଲଃ ସ୍ୟା [୧୪] ଲ୍ଲୋଲଶ୍ଚଲସତୃଷ୍ଣୟୋଃ

ବାନ୍ତଃ ।

[୧] ଦବଦାବୌ ବନାରଣ୍ୟବହ୍ନୀ [୨] ଜନ୍ମହରୌ ଭବୌ ।

---

୧ । ଗୃହାଚ୍ଛାଦନ । ଚକ୍ଷୁରୋଗ । ଅର୍ଥାତ୍ ପରଳ ଏ ଦୁହିଙ୍କି ପଟଳ କହି ।
୨ । ଅଧଃ । ସ୍ୱରୂପ ଏ ଦୁହିଙ୍କି ତଳ କହି । ୩ । ଅମିଷକୁ ପଳ କହି ।
୪ । ବାଡବାଗ୍ନିକି ପାତାଳ କହି । ୫ । ବସ୍ତ୍ର । ଅଧମ ଏ ଦୁହିଙ୍କି ଚେଲ କହି ।
୬ । ଶଙ୍କୁପୂର୍ଣ୍ଣଗର୍ତ୍ତ । ତୁଷାନଳ ଏ ଦୁହିଙ୍କି କୁକୂଳ କହି ।
୭ । ନିର୍ଣ୍ଣୀତ । ଏକ । ସମଗ୍ର ଏମାନଙ୍କୁ କେବଳ କହି ।
୮ । ପର୍ଯ୍ୟାପ୍ତି । ମଙ୍ଗଳ । ପୁଣ୍ୟ । ଶିକ୍ଷିତ ଏମାନଙ୍କୁ କୁଶଳ କହି ।
୯ । ଅଙ୍କୁରକୁ ପ୍ରବାଳ କହି ।  ୧୦ । ଜଡ । ମୋଟା । ଏ ଦୁହିଙ୍କି ସ୍ଥୂଳ କହି ।
୧୧ । ଦନ୍ତୁର ଅର୍ଥାତ୍ ବଡ଼ ଦନ୍ତ ଯାହାର । ତୁଙ୍ଗ ଏ ଦୁହିଙ୍କି କରାଳ କହି ।
୧୨ । ଚାରୁ । ଦକ୍ଷ ଏ ଦୁହିଙ୍କି ପେଶଳ କହି ।
୧୩ । ମୂର୍ଖ । ବାଳକ ଏ ଦୁହିଙ୍କି ବାଳ ବୋଲି
୧୪ । ଚଞ୍ଚଳ । ସତୃଷ୍ଣ ଏ ଦୁହିଙ୍କି ଲୋଳ ବୋଲି ।

ବାନ୍ତବର୍ଗଃ ।

୧ । ବନ । ବନାଗ୍ନି ଏ ଦୁହିଙ୍କି ଦବ କହି ଓ ଦାବ କହି ।
୨ । ଜନ୍ମ । ମହାଦେବ ଏ ଦୁହିଙ୍କି ଭବ କହି ।

[୧] ମନ୍ତ୍ରୀ ସହାୟଃ ସଚିବୌ [୨] ପତିଶାଖିନରା ଧବାଃ ।
[୩] ଅବୟଃ ଶୈଳମେଷାର୍କା [୪] ଆଜ୍ଞାହ୍ୱାନାଧ୍ୱରା ହବାଃ ॥
[୫] ଭାବଃ ସତ୍ତ୍ୱସ୍ୱଭାବାଭିପ୍ରାୟଚେଷ୍ଟାତ୍ମଜନ୍ମସୁ ।
[୬] ସ୍ୟାଦୁତ୍ପାଦେ ଫଲେ ପୁଷ୍ପେ ପ୍ରସବେ ଗର୍ଭମୋଚନେ ॥
[୭] ଅବିଶ୍ୱାସେଽପହ୍ନବେଽପି ନିକୃତାବପି ନିହ୍ନବଃ ।
[୮] ଉତ୍ସେକାମର୍ଷୟୋରିଚ୍ଛାପ୍ରସରେ ମହଉତ୍ସବଃ ॥
[୯] ଅନୁଭାବଃ ପ୍ରଭାବେ ସ୍ୟାତ୍ ସତାଂ ଚ ମତିନିଶ୍ଚୟେ ।
[୧୦] ସ୍ୟାଜ୍ଜନ୍ମହେତୁଃ ପ୍ରଭବଃ ସ୍ଥାନଂ ଚାଦ୍ୟୋପଲବ୍ଧୟେ ॥
[୧୧] ଶୂଦ୍ରାୟାଂ ବିପ୍ରତନୟେ ଶସ୍ତ୍ରେ ପାରଶବଃ ପୁମାନ୍ ।
[୧୨] ଧ୍ରୁବୋ ଭଭେଦେ କ୍ଲୀବଂ ତୁ ନିଶ୍ଚିତେ ଶାଶ୍ୱତେ ତ୍ରିଷୁ ॥
[୧୩] ସ୍ୱୋ ଜ୍ଞାତାବାତ୍ମନି ସ୍ୱଂ ତ୍ରିଷ୍ୱାତ୍ମୀୟେ ସ୍ୱୋଽସ୍ତ୍ରିୟାଂ ଧନେ ।
[୧୪] ସ୍ତ୍ରୀକଟୀବସ୍ତ୍ରବନ୍ଧେଽପି ନୀବୀ ପରିପଣେଽପି ଚ ॥

---

୧ । ମନ୍ତ୍ରୀ । ସହାୟ ଏ ଦୁହିଙ୍କି ସଚିବ କହି । ୨ । ପତି । ବୃକ୍ଷ । ନର ଏମାନଙ୍କୁ ଧବ କହି
୩ । ପର୍ବତ । ମେଷ । ସୂର୍ଯ୍ୟ ଏମାନଙ୍କୁ ଅବି କହି ।
୪ । ଆଜ୍ଞା । ଆହ୍ୱାନ ଯଜ୍ଞ ଏମାନଙ୍କୁ ହବ କହି ।
୫ । ସତ୍ତ୍ୱ । ସ୍ୱଭାବ । ଅଭିପ୍ରାୟ । ଚେଷ୍ଟା । ଆତ୍ମା । ଜନ୍ମ ଏମାନଙ୍କୁ ଭାବ କହି ।
୬ । ଉତ୍ପତ୍ତି । ଫଳ । ପୁଷ୍ପ ଗର୍ଭମୋଚନ ଏମାନଙ୍କୁ ପ୍ରସବ କହି ।
୭ । ଅବିଶ୍ୱାସ । ଅପଲାପ । ନିଷ୍କରଣ ଏମାନଙ୍କୁ ନିହ୍ନବ କହି ।
୮ । ଉତ୍ସେକ । ଅମର୍ଷ । ଇଚ୍ଛା । ଉତ୍ପତ୍ତି ମହ ଏମାନଙ୍କ ଉତ୍ସବ କହି ।
୯ । ପ୍ରଭାବ । ସାଧୁମାନଙ୍କ ମତନିଶ୍ଚୟ ଏ ଦୁହିଙ୍କି ଅନୁଭାବ କହି ।
୧୦ । ଜନ୍ମହେତୁ ଆଦ୍ୟଜ୍ଞାନ ଜନ୍ମିବା ସ୍ଥାନ ଏ ଦୁହିଙ୍କି ପ୍ରଭବ କହି ।
୧୧ । ଶୂଦ୍ରାଠାରେ ଜନ୍ମିଥିବା ବ୍ରାହ୍ମଣ ସନ୍ତାନ । ଶସ୍ତ୍ର ଏ ଦୁହିଙ୍କି ପାରଶବ କହି ।
୧୨ । ନକ୍ଷତ୍ର ବିଶେଷ । ନିଶ୍ଚିତ । ନିତ୍ୟ ଏମାନଙ୍କୁ ଧ୍ରୁବ କହି ।
୧୩ । ଜ୍ଞାତି । ଆତ୍ମା । ଆତ୍ମୀୟ । ଧନ ଏମାନଙ୍କୁ ସ୍ୱ କହି ।
୧୪ । ସ୍ତ୍ରୀମାନଙ୍କର କଟିବସ୍ତ୍ର ବନ୍ଧ (କଷା) ବାଣିଜ୍ୟର ମୂଳଧନ ଏ ଦୁହିଙ୍କି ନୀବୀ କହି ।

[୧] ଶିବା ଗୌରୀଫେରବୟୋ [୨] ଦ୍ୱନ୍ଦ୍ୱଂ କଳହଯୁଗ୍ମୟୋଃ ।
[୩] ଦ୍ରବ୍ୟାସୁବ୍ୟବସାୟେଷୁ ସତ୍ତ୍ୱମସ୍ତ୍ରୀ ତୁ ଜନ୍ତୁଷୁ ॥
[୪] କ୍ଲୀବଂ ନପୁଂସକେ ଷଣ୍ଢେ ବାଚ୍ୟଲିଙ୍ଗମବିକ୍ରମେ ।

ଶାନ୍ତାଃ ।

[୧] ଦ୍ୱୌ ବଶୌ ବୈଶ୍ୟମନୁଜୌ [୨] ଦ୍ୱୌ ଚରଭ୍ରମରୌ ସ୍ପଶୌ
[୩] ଦ୍ୱୌ ରାଶୀ ପୁଞ୍ଜମେଷାଦ୍ୟୌ [୪] ଦ୍ୱୌବଂଶୌ କୁଳମସ୍କରୌ ।
[୫] ରହଃ ପ୍ରକାଶୌ ବୀକାଶୌ [୬] ନିର୍ବେଶୋ ଭୃତିଭୋଗୟୋଃ
[୭] କୃତାନ୍ତେ ପୁଂସି କୀନାଶଃ କ୍ଷୁଦ୍ରକର୍ଷକୟୋସ୍ତ୍ରିଷୁ ।
[୮] ପଦେ ଲକ୍ଷ୍ୟେ ନିମିତ୍ତେଽପି ଦେଶଃ ସ୍ୟାତ୍ [୯] ଭୂଷଣପ୍ୟୁ ଚ ।
[୧୦] ଦଶାବସ୍ଥାନେକବିଧାପ୍ୟା [୧୧] ଶା ତୃଷ୍ଣାପି ଚାୟତା ।
[୧୨] ବଶା ସ୍ତ୍ରୀକରଣୀ ଚ ସ୍ୟାଂ [୧୩] ଦୃଗ୍‌ଜ୍ଞାନେ ଜ୍ଞାତରି ତ୍ରିଷୁ ॥
[୧୪] ସ୍ୟାତ୍ କର୍କଶଃ ସାହସିକଃ କଠୋରାମସୃଣାବପି ।
[୧୫] ପ୍ରକାଶୋଽତିପ୍ରସିଦ୍ଧେଽପି [୧୬] ଶିଶାବଜ୍ଞେ ଚ ବାଳିଶଃ ॥

---

୧ । ଗୌରୀ । ଶୃଗାଳୀ ଏ ଦୁହିଁଙ୍କି ଶିବା କହି । ୨ । କଳହ । ଯୁଗ୍ମ ଏ ଦୁହିଁଙ୍କି ଦ୍ୱନ୍ଦ୍ୱ କହି
୩ । ଦ୍ରବ୍ୟ । ପ୍ରାଣ । ବ୍ୟବସାୟ ଜନ୍ତୁ ଏମାନଙ୍କୁ ସତ୍ତ୍ୱ କହି ।
୪ । ନପୁଂସକ । ଷଣ୍ଢ । ଅବିକ୍ରମ ଏମାନଙ୍କ କ୍ଲୀବ କହି ।

ଶାନ୍ତାଃ ।

୧ । ବୈଶ୍ୟ । ମନୁଷ୍ୟ ଏ ଦୁହିଁଙ୍କି ବଶ କହି । ୨ । ଚର । ପୁଷ ଏ ଦୁହିଁଙ୍କି ସ୍ପଶ କହି ।
୩ । ପୁଞ୍ଜ । ମେଷାଦି ଦ୍ୱାଦଶ ଏମାନଙ୍କୁ ରାଶି କହି । ୪ । କୁଳ । ବଣ ଏ ଦୁହିଁଙ୍କି ବଂଶ କହି
୫ । ଗୋପନସ୍ଥାନ । ପ୍ରକାଶ ଏ ଦୁହିଁଙ୍କି ବିକାଶ କହି । (କୀନାଶ କହି ।
୬ । ଭୃତି । ଭୋଗ ଏ ଦୁହିଁଙ୍କି ନିର୍ବେଶ କହି । ୭ । ଯମ । କ୍ଷୁଦ୍ର । କର୍ଷକ ଏମାନଙ୍କୁ
୮ । ପଦ । ଲକ୍ଷ୍ୟ । ନିମିତ୍ତ ଏମାନଙ୍କୁ ଅପଦେଶ କହି । ୯ ଜଳକୁ ଗୁଣ ବୋଲାଯାଏ ।
୧୦ । ଅନେକ ବିଧ ଅବସ୍ଥାକୁ ଦଶା କହି । ୧୧ । ଅଦ୍ଭୁତ । ତୃଷ୍ଣା । ଦିକ୍ ଏମାନଙ୍କୁ ଆଶା କହି
୧୨ । ସ୍ତ୍ରୀକରିଣୀ ବଶା ବୋଲାଯାଏ । ୧୩ । ଜ୍ଞାନ । ଜ୍ଞାତା ଏ ଦୁହିଁଙ୍କି ଦୃଶ କହି ।
୧୪ । ସାହସିକ । କଠୋର ଅମସୃଣ ଏମାନଙ୍କୁ କର୍କଶ କହି ।
୧୫ । ଅତି ପ୍ରସିଦ୍ଧକୁ ପ୍ରକାଶ ବୋଲାଯାଏ । ୧୬ । ଶିଶୁ । ଅଜ୍ଞ ଏ ଦୁହିଁଙ୍କି ବାଳିଶ କହି

ଷାନ୍ତାଃ ।

[୧] ସୁରମତ୍ସ୍ୟାବନିମିଷୌ [୨] ପୁରୁଷାବାତ୍ମମାନବୌ ।
[୩] କାକମତ୍ସ୍ୟାତ୍ ଖଗୌ ଧ୍ୱାଂକ୍ଷୌ [୪] କକ୍ଷୌ ତୁ ତୃଣବୀରୁଧୌ ।
[୫] ଅଭୀଷୁଃ ପ୍ରଗ୍ରହେ ରଶ୍ମୌ [୬] ପ୍ରୈଷଃ ପ୍ରେଷଣମର୍ଦ୍ଦନେ ।
[୭] ପକ୍ଷଃ ସହାୟେଽପ୍ୟୁ [୮] ଷ୍ଣୀଷଃ ଶିରୋବେଷ୍ଟକିରୀଟୟୋଃ ।
[୯] ଶୁକ୍ରଲେ ମୂଷିକେ ଶ୍ରେଷ୍ଠେ ସୁକୃତେ ବୃଷଭେ ବୃଷଃ ।
[୧୦] କୋଷୋଽସ୍ତ୍ରୀ କୁଡ୍ମଲେ ଖଡ୍ଗପିଧାନେଽର୍ଥୌଘଦିବ୍ୟୟୋଃ ।
[୧୧] ଦ୍ୟୂତେଽକ୍ଷେ ସାରିଫଳକେଽପ୍ୟାକର୍ଷୋଽଥା [୧୨] କ୍ଷମିନ୍ଦ୍ରିୟେ
ନା ଦ୍ୟୂତାଙ୍ଗେ କର୍ଷଚକ୍ରେ ବ୍ୟବହାରେ କଲିଦ୍ରୁମେ ।
[୧୩] କର୍ଷୂର୍ବାର୍ତ୍ତ୍ରୀ କରୀଷାଗ୍ନିଃ କର୍ଷୂଃ କୁଲ୍ୟାଭିଧାୟିନୀ ।
[୧୪] ପୁମ୍ଭାବେ ତତ୍କ୍ରିୟାୟାଂ ଚ ପୌରୁଷଂ [୧୫] ବିଷମପ୍ସୁ ଚ ।

---

ଷାନ୍ତବର୍ଗ ।

୧ । ଦେବତା । ମତ୍ସ୍ୟ ଏ ଦୁହିଙ୍କି ଅନିମିଷ କହି । ୨ । ଆତ୍ମା । ମନୁଷ୍ୟ ଏ ଦୁହିଙ୍କି ପୁରୁଷ କହି
୩ । କାକ । ମତ୍ସ୍ୟଭେଦୀ ପକ୍ଷୀ ଏ ଦୁହିଙ୍କି ଧ୍ୱାଂକ୍ଷ କହି ।
୪ । ତୃଣ । ଲତା ଏ ଦୁହିଙ୍କି କକ୍ଷ କହି ।
୫ । ପ୍ରଗ୍ରହ । [ ଅର୍ଥାତ୍ ଅଶ୍ୱମୁଖ ରଜ୍ଜୁ ] ରଶ୍ମି [ କିରଣ ] ଏ ଦୁହିଙ୍କି ଅଭୀଷୁ କହି ।
୬ । ପ୍ରେରଣ । ମର୍ଦ୍ଦନ ଏ ଦୁହିଙ୍କି ପ୍ରୈଷ କହି ।   ୭ । ସହାୟକୁ ପକ୍ଷ କହି ।
୮ । ଶିରୋବେଷ୍ଟନ [ ପାଗ ] କିରୀଟ ଏ ଦୁହିଙ୍କି ଉଷ୍ଣୀଷ କହି ।
୯ । ଶୁକ୍ରଯୁକ୍ତ । ମୂଷିକ । ଶ୍ରେଷ୍ଠ । ସୁକୃତ । ବୃଷଭ ଏମାନଙ୍କୁ ବୃଷ କହି । ( ବୋଲଦା ଏ
୧୦ । କୁଡ୍ମଳ । ଖଡ୍ଗର ଅଣ୍ଡଦଣ୍ଡ ଅର୍ଥାତ୍ ଖାପ । ଅର୍ଥସମୂହ । ଦିବ୍ୟ ଏମାନଙ୍କୁ କୋଷ
୧୧ । ଦ୍ୟୂତ । ଅର୍ଥାତ୍ ଅକ୍ଷକ୍ରୀଡା । ସାରିଫଳକ ଏ ଦୁହିଙ୍କି ଆକର୍ଷ କହି ।
୧୨ । ଇନ୍ଦ୍ରିୟ । ପାଶକ ଅର୍ଥାତ୍ ପାଶି । କର୍ଷଚକ୍ର । ବ୍ୟବହାର କଳିଦ୍ରୁମ ଅର୍ଥାତ୍
ବାହାଡାଗଛ ଏମାନଙ୍କୁ ଅକ୍ଷ କହି ।
୧୩ । ବାର୍ତ୍ତା । ପଶୁଲିଣ୍ଡି । ଅଳ୍ପକୃତ୍ରିମନଦୀ ଏମାନଙ୍କୁ କର୍ଷୂ କହି ।
୧୪ । ପୁରୁଷଭାବ । ପୁରୁଷର କ୍ରିୟା ଏ ଦୁହିଙ୍କି ପୌରୁଷ କହି ।
୧୫ । ଗରଳ । ଜଳ ଏ ଦୁହିଙ୍କି ବିଷ କହି ।

[୧] ଉପାଦାନେଽପ୍ୟାମିଷଂ ସ୍ୟା [୨] ଦପରାଧେଽପି କିଲ୍ବିଷଂ ।
[୩] ସ୍ୟାଦ୍ବୃଷ୍ଟୌ ଲୋକଧାତ୍ୱଂଶେ ବତ୍ସରେ ବର୍ଷମସ୍ତ୍ରିୟାଂ ॥
[୪] ପ୍ରେକ୍ଷା ନୃତ୍ୟେକ୍ଷଣଂ ପ୍ରଜ୍ଞା [୫] ଭିକ୍ଷା ସେବାର୍ଥନାଭୃତିଃ ।
[୬] ତ୍ୱିଟ୍ ଶୋଭାପି ତ୍ରିଷୁ ପରେ [୭] ନ୍ୟକ୍ଷଂ କାର୍ତ୍ସ୍ନ୍ୟନିକୃଷ୍ଟୟୋଃ
[୮] ପ୍ରତ୍ୟକ୍ଷେଽଧିକୃତେଽଧ୍ୟକ୍ଷୋ [୯] ରୂକ୍ଷସ୍ତ୍ୱପ୍ରେମ୍ଣ୍ୟଚିକ୍କଣେ ।

ସାନ୍ତାଃ ।

[୧] ରବିଶ୍ୱେତଚ୍ଛଦୌ ହଂସୌ [୨] ସୂର୍ଯ୍ୟବହ୍ନୀ ବିଭାବସୂ ।
[୩] ବତ୍ସୌ ତର୍ଣ୍ଣକବର୍ଷୌ ଦ୍ୱୌ [୪] ସାରଙ୍ଗାଶ୍ଚ ଦିବୌକସଃ ॥
[୫] ଶୃଙ୍ଗାରାଦୌ ବିଷେ ବୀର୍ଯ୍ୟେ ଗୁଣେ ରାଗେ ଦ୍ରବେ ରସଃ ।
[୬] ପୁଂସ୍ୟୁତ୍ତଂସାବତଂସୌ ଦ୍ୱୌ କର୍ଣ୍ଣପୂରେଽପି ଶେଖରେ ॥
[୭] ଦେବଭେଦେଽନଲେ ରଶ୍ମୌ ବସୂ ରତ୍ନେ ଧନେ ବସୁ ।

---

୧ । ମାଂସ । ଉତ୍କୋଚ ଏ ଦୁହିଙ୍କି ଆମିଷ କହି । ୨ । ଅପରାଧକୁ କିଲ୍ବିଷ କହି ।
୩ । ବୃଷ୍ଟି । ଦ୍ୱୀପାଂଶ । ବତ୍ସର ଏମାନଙ୍କୁ ବର୍ଷ କହି ।
୪ । ନୃତ୍ୟଦର୍ଶନ । ପ୍ରଜ୍ଞା ଏ ଦୁହିଙ୍କି ପ୍ରେକ୍ଷା କହି ।
୫ । ସେବା । ଅର୍ଥପ୍ରାର୍ଥନା । ଭୃତି ଏମାନଙ୍କୁ ଭିକ୍ଷା କହି । ୬ । ଶୋଭାକୁ ତ୍ୱିଟ୍ କହି ।
୭ । ସାକଲ୍ୟ । ନିକୃଷ୍ଟ ଏ ଦୁହିଙ୍କି ନ୍ୟକ୍ଷ କହି ।
୮ । ପ୍ରତ୍ୟକ୍ଷ । ଅଧିକୃତ ଏ ଦୁହିଙ୍କି ଅଧ୍ୟକ୍ଷ କହି ।
୯ । ଅପ୍ରେମ । ଅଚିକ୍କଣ ଏ ଦୁହିଙ୍କି ରୂକ୍ଷ କହି ।

ସାନ୍ତବର୍ଗ ।

୧ । ରବି । ଶୁକ୍ଳହଂସ ଏ ଦୁହିଙ୍କି ହଂସ କହି । ୨ । ସୂର୍ଯ୍ୟ । ଅଗ୍ନି ଏ ଦୁହିଙ୍କି ବିଭାବସୁ କହି
୩ । ତର୍ଣ୍ଣକ ଅର୍ଥାତ୍ ଗୋ ଶିଶୁ । ବର୍ଷ ଏ ଦୁହିଙ୍କି ବତ୍ସ କହି ।
୪ । ସାରଙ୍ଗ ଅର୍ଥାତ୍ ପକ୍ଷିମାନଙ୍କୁ ଦିବୌକସ କହି ।
୫ । ଶୃଙ୍ଗାରାଦି । ବିଷ । ବୀର୍ଯ୍ୟ । ଗୁଣ । ରାଗ । ଦ୍ରବ ଏମାନଙ୍କୁ ରସ କହି ।
୬ । କର୍ଣ୍ଣଭୂଷଣ । ଶିରୋଭୂଷଣ ଏ ଦୁହିଙ୍କି ଉତ୍ତଂସ କହି ଏବଂ ଅବତଂସ କହି ।
୭ । ଗଣଦେବତାବିଶେଷ । ଅଗ୍ନି । କିରଣ । ରତ୍ନ । ଧନ ଏମାନଙ୍କୁ ବସୁ କହି ।

[୧] ସ୍ରଷ୍ଟୌ ଚ ବେଧାଃ ସ୍ତ୍ରୀତ୍ୱା [୨] ଶୀର୍ହିତାଶଂସାହିଦଂଷ୍ଟ୍ରୟୋଃ ॥
[୩] ଲାଲସେ ପ୍ରାର୍ଥନୌତ୍ସୁକ୍ୟେ [୪] ହିଂସା ଚୌର୍ଯ୍ୟାଦି କର୍ମ୍ମ ଚ ।
[୫] ପ୍ରସୂରଶ୍ୱାପି [୬] ଭୂଦ୍ୟାବୌ ରୋଦସ୍ୟୌ ରୋଦସୀ ଚ ତେ ।
[୭] ଜ୍ୱାଳାଭାସୋର୍ନପୁଂସ୍ୟର୍ଚ୍ଚିଃ [୮] ଜ୍ୟୋତିର୍ଭଦ୍ୟୋତଦୃଷ୍ଟିଷୁ ॥
[୯] ପାପାପରାଧୟୋରାଗଃ [୧୦] ଖଗବାଲ୍ୟାଦିନୋର୍ବୟଃ ॥
[୧୧] ତେଜଃ ପୁରୀଷୟୋର୍ବର୍ଚ୍ଚୋ [୧୨] ମହସ୍ତୂତ୍ସବତେଜସୋଃ ।
[୧୩] ରଜୋ ଗୁଣେ ଚ ସ୍ତ୍ରୀପୁଷ୍ପେ [୧୪] ରାହୌ ଧ୍ୱାନ୍ତେ ଗୁଣେ ତମଃ
[୧୫] ଛନ୍ଦଃ ପଦ୍ୟେଽଭିଲାଷେ ଚ [୧୬] ତପଃ କୃଚ୍ଛ୍ରାଦି କର୍ମ୍ମ ଚ ।
[୧୭] ସହୋବଳଂ ସହାମାର୍ଗୋ [୧୮] ନଭଃ ଖଂ ଶ୍ରାବଣେ ନଭାଃ ।
[୧୯] ଓକଃ ସଦ୍ମାଶ୍ରୟଶ୍ଚୌକାଃ [୨୦] ପୟଃ କ୍ଷୀରଂ ପୟୋଽମ୍ବୁ ଚ ।
[୨୧] ଓଜୋ ଦୀପ୍ତୌ ବଲେ [୨୨] ସ୍ରୋତ ଇନ୍ଦ୍ରିୟେ ନିମ୍ନଗାରୟେ ॥

---

୧ । ବ୍ରହ୍ମାଙ୍କୁ ବେଧସ୍ କହି । ୨ । ହିତଆଶଂସା । ସର୍ପଦଂଷ୍ଟ୍ରା ଏ ଦୁହିଙ୍କି ଆଶୀର୍ କହି ।
୩ । ପ୍ରାର୍ଥନା । ଔତ୍ସୁକ୍ୟ ଏ ଦୁହିଙ୍କି ଲାଲସା କହି ।
୪ । ଚୌର୍ଯ୍ୟାଦି ପ୍ରଭୃତି କର୍ମକୁ ହିଂସା କହି । ୫ । ଘୋଟକୀକି ପ୍ରସୂ କହି ।
୬ । ପୃଥିବୀ । ସ୍ୱର୍ଗ ଏ ଦୁହିଙ୍କି ରୋଦସୀ ଏବ ରୋଦସ୍ କହି । [ କେବଳମ୍ କହି ।
୭ । ଅଗ୍ନିଶିଖା । ଦୀପ୍ତି ଏ ଦୁହିଙ୍କି ଅର୍ଚ୍ଚିସ୍ କହି । ୮ । ନକ୍ଷତ୍ର । ଦୀପ୍ତି । ଦୃଷ୍ଟି ଏମାନଙ୍କୁ
୯ । ପାପ । ଅପରାଧ ଏ ଦୁହିଙ୍କି ଆଗସ୍ କହି ।
୧୦ । ଖଗ ଅର୍ଥାତ୍ ପକ୍ଷୀ । ବାଲ୍ୟାଦି ଏମାନଙ୍କୁ ବୟସ୍ କହି ।
୧୧ । ତେଜ । ଦଣ୍ଡା ଏ ଦୁହିଙ୍କି ବର୍ଚ୍ଚସ୍ କହି । ୧୨ । ଉତ୍ସବ । ତେଜ ଏ ଦୁହିଙ୍କି ମହସ୍ କହି
୧୩ । ଗୁଣ । ସ୍ତ୍ରୀର ଋତୁ ଏ ଦୁହିଙ୍କି ରଜସ୍ କହି ।
୧୪ । ରାହୁ । ଅନ୍ଧକାର । ଗୁଣବିଶେଷ ଏମାନଙ୍କୁ ତମସ୍ କହି ।
୧୫ । ପଦ୍ୟ । ଅଭିଳାଷ ଏ ଦୁହିଙ୍କି ଛନ୍ଦସ୍ କହି । ୧୬ । କୃଚ୍ଛ୍ରାଦି କର୍ମକୁ ତପସ୍ କହି
୧୭ । ବଳ । ମାର୍ଗଶିରମାସ ଏ ଦୁହିଙ୍କି ସହସ୍ କହି । [ ଓକସ୍ କହି ।
୧୮ । ଆକାଶ । ଶ୍ରାବଣମାସ ଏ ଦୁହିଙ୍କି ନଭସ୍ କହି । ୧୯ । ଗୃହ । ଆଶ୍ରୟ ଏ ଦୁହିଙ୍କି
୨୦ । କ୍ଷୀର । ଜଳ ଏ ଦୁହିଙ୍କି ପୟସ୍ କହି । ୨୧ । ଦୀପ୍ତି । ବଳ ଏ ଦୁହିଙ୍କି ଓଜସ୍ କହି
୨୨ । ଇନ୍ଦ୍ରିୟ । ନଦୀବେଗ ଏ ଦୁହିଙ୍କି ସ୍ରୋତସ୍ କହି ।

[୧] ତେଜଃ ପ୍ରଭାବେ ଦୀପ୍ତୌ ଚ ବଳେ ଶୁକ୍ରେଽପ୍ୟତସ୍ତ୍ରିଷୁ ।
[୨] ବିଦ୍ୱାନ୍ ବିଦଂଶ୍ଚ [୩] ବୀଭତ୍ସୋ ହିଂସ୍ରୋଽପ୍ୟ [୪] ତିଶୟେ ତ୍ୱମୀ
ବୃଦ୍ଧପ୍ରଶସ୍ୟୟୋର୍ଜ୍ୟାୟାନ୍ [୫] କନୀୟାଂସ୍ତୁ ଯୁବାଳ୍ପୟୋଃ ।
[୬] ବରୀୟାଂସ୍ତୂରୁବରୟୋଃ [୭] ସାଧୀୟାନ୍ ସାଧୁବାଢ଼ୟୋଃ ।

ଦାନ୍ତାଃ ।

[୧] ଦଳେଽପି ବର୍ହଂ [୨] ନିର୍ବନ୍ଧୋପରାଗାର୍କାଦୟୋ ଗ୍ରହାଃ ।
[୩] ଦ୍ୱାର୍ଯ୍ୟାପୀଡେ କ୍ୱାଥରସେ ନିର୍ଯ୍ୟୂହୋ ନାଗଦନ୍ତକେ
[୪] ତୁଲାସୂତ୍ରେଽଶ୍ୱାଦିରଶ୍ମୌ ପ୍ରଗ୍ରାହଃ ପ୍ରଗ୍ରହୋଽପି ଚ ।
[୫] ପତ୍ନୀ ପରିଜନାଦାନମୂଳଶାପାଃ ପରିଗ୍ରହାଃ ।
[୬] ଦାରେଷ୍ୱପି ଗୃହାଃ [୭] ଶ୍ରୋଣ୍ୟାମପ୍ୟାରୋହୋ ବରସ୍ତ୍ରିୟାଃ ।
[୮] ବ୍ୟୂହୋ ବୃନ୍ଦେଽପ୍ୟ[୯]ହିର୍ବୃତ୍ରେଽପ୍ୟ[୧୦]ଗ୍ନୀନ୍ଦ୍ୱର୍କାସ୍ତମୋପହାଃ

---

୧ । ପ୍ରଭାବ ଦୀପ୍ତି । ବଳ । ଶୁକ୍ର ଏମାନଙ୍କୁ ତେଜସ୍ କହି ।
୨ । ପଣ୍ଡିତଙ୍କୁ ବିଦ୍ୱାନ୍ କହି । ୩ । ହିଂସ୍ରକୁ ବୀଭତ୍ସ କହି ।
୪ । ଅତିବୃଦ୍ଧ । ଅତିପ୍ରଶସ୍ତ ଏ ଦୁହିଙ୍କି ଜ୍ୟାୟାନ୍ କହି ।
୫ । ଅତିଯୁବା । ଅତିଅଳ୍ପ ଏ ଦୁହିଙ୍କି କନୀୟାନ୍ କହି ।
୬ । ଅତିଶୟ ଉରୁ ( ମହତ୍ ) ଅତିଶୟବର [ ଶ୍ରେଷ୍ଠ ] ଏ ଦୁହିଙ୍କି ବରୀୟାନ୍ କହି ।
୭ । ଅତିସାଧୁ । ଅତି ବାଢ ( ଦୃଢ ) ଏ ଦୁହିଙ୍କି ସାଧୀୟାନ୍ କହି ।

ଦାନ୍ତବର୍ଗଃ ।

୧ । ଦଳ ଅର୍ଥାତ୍ ପତ୍ର । ମୟୂରପୁଚ୍ଛ ଏ ଦୁହିଙ୍କି ବର୍ହ କହି ।
୨ । ସୂର୍ଯ୍ୟାଦି ନବଗ୍ରହ, ଚନ୍ଦ୍ରସୂର୍ଯ୍ୟଙ୍କ ଗ୍ରହଣ ଏମାନଙ୍କୁ ଗ୍ରହ କହି ।
୩ । ଦ୍ୱାର । ମସ୍ତକଭୂଷଣ । କ୍ୱାଥରସ । ହସ୍ତିଦନ୍ତ ଏମାନଙ୍କୁ ନିର୍ଯ୍ୟୂହ କହି ।
୪ । ତୁଳାଦଣ୍ଡର ରଜ୍ଜୁ । ଅଶ୍ୱାଦିବନ୍ଧନ ରଜ୍ଜୁ ଏ ଦୁହିଙ୍କି ପ୍ରଗ୍ରାହ ଓ ପ୍ରଗ୍ରହ କହି ।
୫ । ପତ୍ନୀ । ପରିଜନ । ଆଦାନ । ମୂଳ । ଶାପ ଏମାନଙ୍କୁ ପରିଗ୍ରହ କହି ।
୬ । ଦାରକୁ ଗୃହ କହି । ୭ । ଉତ୍ତମସ୍ତ୍ରୀର କଟିକି ଆରୋହ କହି ।
୮ । ସମୂହକୁ ବ୍ୟୂହ ବୋଲି । ୯ । ବୃତ୍ରାସୁରକୁ ଅହି ବୋଲାଯାଏ ।
୧୦ । ଅଗ୍ନି । ଚନ୍ଦ୍ର । ସୂର୍ଯ୍ୟ ଏମାନଙ୍କୁ ତମୋପହ କହି ।

[୧] ପରଚ୍ଛେଦେ ନୃପର୍ଦ୍ଧେ ଽର୍ଥେ ପଞ୍ଚବର୍ଦ୍ଧୋ ଽର୍ଦ୍ଧ୍ୟୟୋଃ ପରେ ।

ଇତି ନାନାର୍ଥବର୍ଗଃ ।

---

## ଅବ୍ୟୟବର୍ଗଃ ।

[୧] ଆଙୀଷଦର୍ଥେ ଽଭିବ୍ୟାପ୍ତୌ ସୀମାର୍ଥେ ଧାତୁଯୋଗଜେ ।
[୨] ଆ ପ୍ରଗୃହ୍ୟଃ ସ୍ମୃତୌ ବାକ୍ୟେଽପ୍ୟା [୩] ସ୍ତୁ ସ୍ୟାତ୍ କୋପପୀଡ଼ୟୋଃ ।
[୪] ପାପ କୁତ୍ସେଷଦର୍ଥେ କୁ [୫] ଧିଙ୍ ନିର୍ଭର୍ତ୍ସନନିନ୍ଦୟୋଃ ।
[୬] ଚାନ୍ୱାଚୟେ ସମାହାରେତରେତର ସମୁଚ୍ଚୟେ ।
[୭] ସ୍ୱସ୍ତ୍ୟାଶୀଃ କ୍ଷେମପୁଣ୍ୟାଦୌ [୮] ପ୍ରକର୍ଷେ ଲଙ୍ଘନେ ଽପ୍ୟତି ।
[୯] ସ୍ୱିତ୍ ପ୍ରଶ୍ନେ ଚ ବିତର୍କେ ଚ [୧୦] ତୁ ସ୍ୟାଦ୍ଭେଦେଽବଧାରଣେ ।
[୧୧] ସକୃତ୍ ସହୈକବାରେ ସ୍ୟା [୧୨] ଦାରାଦ୍ଦୂରସମୀପୟୋଃ ।
[୧୩] ପ୍ରତୀଚ୍ୟାଂ ଚରମେ ପଶ୍ଚା [୧୪] ଦୁତାପ୍ୟର୍ଥବିକଳ୍ପୟୋଃ ।

---

୧ । ପରଚ୍ଛେଦ । ନୃପଯୋଗ୍ୟଅର୍ଥ ଏ ଦୁହିଙ୍କି ପଞ୍ଚବର୍ଦ୍ଧ କହି ।

---

ଅବ୍ୟୟବର୍ଗଃ ।

୧ । ଈଷଦର୍ଥ । ଅଭିବ୍ୟାପ୍ତି ସୀମା । ଧାତୁଯୋଗଜାତ ଏହି ଅର୍ଥମାନଙ୍କରେ ଆଙ୍ ପ୍ରବର୍ତ୍ତଇ
୨ । ପ୍ରଗୃହ୍ୟ ହୁଏ । ସ୍ମୃତି । ବାକ୍ୟ ଏହି ଅର୍ଥମାନଙ୍କରେ ଆ ପ୍ରବର୍ତ୍ତଇ ।
୩ । କୋପ । ପୀଡ଼ା ଏ ଦୁଇଅର୍ଥରେ ଆଃ ପ୍ରବର୍ତ୍ତଇ ।
୪ । ପାପ । କୁତ୍ସା ଈଷଦର୍ଥ ଏହି ଅର୍ଥରେ କୁ ପ୍ରବର୍ତ୍ତଇ ।
୫ । ନିର୍ଭର୍ତ୍ସନ । ନିନ୍ଦା ଏ ଦୁଇଅର୍ଥରେ ଧିକ୍ ପ୍ରବର୍ତ୍ତଇ ।
୬ । ଅନ୍ୱାଚୟ । ସମାହାର । ଇତରେତର । ସମୁଚ୍ଚୟ ଏହି ଅର୍ଥମାନଙ୍କରେ ଚ ପ୍ରବର୍ତ୍ତଇ
୭ । ଆଶୀର୍ବାଦ । ମଙ୍ଗଳ । ପୁଣ୍ୟାଦି ଏହି ଅର୍ଥରେ ସ୍ୱସ୍ତି ପ୍ରବର୍ତ୍ତଇ ।
୮ । ପ୍ରକର୍ଷ । ଲଙ୍ଘନ ଏ ଦୁଇଅର୍ଥରେ ଅତି ପ୍ରବର୍ତ୍ତଇ । [ଦୁଇଅର୍ଥରେ ତୁ ପ୍ରବର୍ତ୍ତଇ ।
୯ । ପ୍ରଶ୍ନ । ବିତର୍କ ଏ ଦୁଇଅର୍ଥରେ ସ୍ୱିତ୍ ପ୍ରବର୍ତ୍ତଇ । ୧୦ । ଭେଦ । ଅବଧାରଣ ଏ
୧୧ । ସଙ୍ଗତ । ଏକବାର ଏ ଦୁଇଅର୍ଥରେ ସକୃତ୍ ପ୍ରବର୍ତ୍ତଇ ।
୧୨ । ଦୂର । ସମୀପ ଏ ଦୁଇଅର୍ଥରେ ଆରାତ୍ ପ୍ରବର୍ତ୍ତଇ ।
୧୩ । ପଶ୍ଚିମଦିଗ୍ ଶେଷ ଏ ଦୁଇଅର୍ଥରେ ପଶ୍ଚାତ୍ ପ୍ରବର୍ତ୍ତଇ ।
୧୪ । ଅପ୍ୟର୍ଥ । ବିକଳ୍ପ ଏ ଦୁଇଅର୍ଥରେ ଉତ ପ୍ରବର୍ତ୍ତଇ ।

[୧] ପୁନଃ ସଦାର୍ଥୟୋଃ ଶଶ୍ୱତ୍ [୨] ସାକ୍ଷାତ୍ ପ୍ରତ୍ୟକ୍ଷତୁଲ୍ୟୟୋଃ ।
[୩] ଖେଦାନୁକମ୍ପାସନ୍ତୋଷବିସ୍ମୟାମନ୍ତ୍ରଣେ ବତ ॥
[୪] ହନ୍ତ ହର୍ଷେଽନୁକମ୍ପାୟାଂ ବାକ୍ୟାରମ୍ଭବିଷାଦୟୋଃ ।
[୫] ପ୍ରତି ପ୍ରତିନିଧୌ ବୀପ୍ସାଲକ୍ଷଣାଦୌ ପ୍ରୟୋଗତଃ ॥
[୬] ଇତି ହେତୁ ପ୍ରକରଣ ପ୍ରକର୍ଷାଦି ସମାପ୍ତିଷୁ ।
[୭] ପ୍ରାଚ୍ୟାଂ ପୁରସ୍ତାତ୍ ପ୍ରଥମେ ପୁରାର୍ଥେଽଗ୍ରତ ଇତ୍ୟପି ॥
[୮] ଯାବତ୍ତାବଚ୍ଚ ସାକଲ୍ୟେଽବଧୌ ମାନେଽବଧାରଣେ ।
[୯] ମଙ୍ଗଳାନନ୍ତରାରମ୍ଭପ୍ରଶ୍ନକାର୍ତ୍ସ୍ନ୍ୟେଷ୍ୱଥୋ ଅଥ ॥
[୧୦] ବୃଥା ନିରର୍ଥକାବିଧ୍ୟୋ [୧୧] ର୍ନାନାନେକୋଭୟାର୍ଥୟୋଃ ।
[୧୨] ନୁ ପୃଚ୍ଛାୟାଂ ବିକଳ୍ପେ ଚ [୧୩] ପଶ୍ଚାତ୍ ସାଦୃଶ୍ୟୟୋରନୁ ॥

---

୧ । ପୁନଃ । ସଦା ଏ ଦୁଇ ଅର୍ଥରେ ଶଶ୍ୱତ୍ ପ୍ରବର୍ତ୍ତଇ ।
୨ । ପ୍ରତ୍ୟକ୍ଷ । ତୁଲ୍ୟ ଏ ଦୁଇ ଅର୍ଥରେ ସାକ୍ଷାତ୍ ପ୍ରବର୍ତ୍ତଇ [ ପ୍ରବର୍ତ୍ତଇ ।
୩ । ଖେଦ । ଅନୁକମ୍ପା । ସନ୍ତୋଷ । ବିସ୍ମୟ । ଆମନ୍ତ୍ରଣ ଏତେ ଅର୍ଥମାନଙ୍କର ବତ
୪ । ହର୍ଷ । ଦୟା । ବାକ୍ୟାରମ୍ଭ । ବିଷାଦ ଏତେ ଅର୍ଥମାନଙ୍କରେ ହନ୍ତ ପ୍ରବର୍ତ୍ତଇ ।
୫ । ପ୍ରତିନିଧି । ପ୍ରୟୋଗାନୁସାରେ ବୀପ୍ସା । ଲକ୍ଷଣାଦି । ଏତେ ଅର୍ଥରେ ପ୍ରତି ପ୍ରବର୍ତ୍ତଇ ।
୬ । ହେତୁ । ପ୍ରକରଣ । ପ୍ରକର୍ଷ । ସମାପ୍ତି ଏତେ ଅର୍ଥମାନଙ୍କରେ ଇତି ପ୍ରବର୍ତ୍ତଇ ।
୭ । ପୂର୍ବଦିଗ୍ । ପ୍ରଥମ । ଅଗ୍ର । ଅଗ୍ରବର୍ତ୍ତୀ ଏତେ ଅର୍ଥମାନଙ୍କରେ ପୁରସ୍ତାତ୍ ପ୍ରବର୍ତ୍ତଇ ।
୮ । ସାକଲ୍ୟ । ସୀମା । ପରିମାଣ । ନିର୍ଣ୍ଣୟ ଏତେ ଅର୍ଥମାନଙ୍କରେ ଯାବତ୍ ଓ ତାବତ୍ ଏ ଦୁହେଁ ପ୍ରବର୍ତ୍ତନ୍ତି ।
୯ । ମଙ୍ଗଳ । ଅନନ୍ତର । ଆରମ୍ଭ ପ୍ରଶ୍ନ । ସମସ୍ତ ଏତେ ଅର୍ଥମାନଙ୍କରେ ଅଥୋ ଓ ଅଥ ଏ ଦୁହେଁ ପ୍ରବର୍ତ୍ତନ୍ତି ।
୧୦ । ନିରର୍ଥକ । ଅବିଧି ଏ ଦୁଇ ଅର୍ଥରେ ବୃଥା ପ୍ରବର୍ତ୍ତଇ ।
୧୧ । ଅନେକ । ଉଭୟାର୍ଥ ଏ ଦୁଇ ଅର୍ଥରେ ନାନା ପ୍ରବର୍ତ୍ତଇ ।
୧୨ । ପଚ୍ଛିବା । ବିକଳ୍ପ ଏ ଦୁଇ ଅର୍ଥରେ ନୁ ପ୍ରବର୍ତ୍ତଇ ।
୧୩ । ପଶ୍ଚାତ୍ । ସାଦୃଶ୍ୟ ଏ ଦୁଇ ଅର୍ଥରେ ଅନୁ ପ୍ରବର୍ତ୍ତଇ ।

[୧] ପ୍ରଶ୍ନାବଧାରଣାନୁଜ୍ଞାନୁନୟାମନ୍ତ୍ରଣେ ନନୁ ।
[୨] ଗର୍ହାସମୁଚ୍ଚୟପ୍ରଶ୍ନଶଙ୍କା ସମ୍ଭାବନାସ୍ୱପି ॥
[୩] ଉପମାୟାଂ ବିକଳ୍ପେ ବା [୪] ସାମି ତ୍ୱର୍ଦ୍ଧେ ଜୁଗୁପ୍ସିତେ ।
[୫] ଅମା ସହ ସମୀପେ ଚ [୬] କଂ ବାରିଣି ଚ ମୂର୍ଦ୍ଧନି ।
[୭] ଇବେତ୍ଥମର୍ଥୟୋରେବ [୮] ନୂନଂ ତର୍କେଽର୍ଥନିଶ୍ଚୟେ ॥
[୯] ତୂଷ୍ଣୀମର୍ଥେ ସୁଖେ ଜୋଷଂ [୧୦] କିଂ ପୃଚ୍ଛାୟାଂ ଜୁଗୁପ୍ସନେ ।
[୧୧] ନାମ ପ୍ରକାଶ୍ୟ ସମ୍ଭାବ୍ୟ କ୍ରୋଧୋପଗମ କୁତ୍ସନେ ।
[୧୨] ଅଲଂ ଭୂଷଣପର୍ଯ୍ୟାପ୍ତି ଶକ୍ତି ବାରଣବାଚକଂ ॥
[୧୩] ହୂଁ ବିତର୍କେ ପରିପ୍ରଶ୍ନେ [୧୪] ସମୟାନ୍ତିକମଧ୍ୟୟୋଃ ।
[୧୫] ପୁନରପ୍ରଥମେ ଭେଦେ [୧୬] ନିର୍ନିଶ୍ଚୟନିଷେଧୟୋଃ ॥

---

୧ । ପ୍ରଶ୍ନ । ଅବଧାରଣ । ଅନୁଜ୍ଞା ଅନୁନୟ ଆମନ୍ତ୍ରଣ ଏହି ଅର୍ଥମାନଙ୍କରେ ନନୁ ପ୍ରବର୍ତ୍ତଇ

୨ । ନିନ୍ଦା । ସମୁଚ୍ଚୟ । ପ୍ରଶ୍ନ । ଶଙ୍କା । ସମ୍ଭାବନା ଏହି ଅର୍ଥମାନଙ୍କରେ ଅପି ପ୍ରବର୍ତ୍ତଇ ।

୩ । ଉପମା । ବିକଳ୍ପ ଏ ଦୁଇ ଅର୍ଥରେ ବା ପ୍ରବର୍ତ୍ତଇ ।

୪ । ଅର୍ଦ୍ଧ । ନିନ୍ଦା ଏ ଦୁଇ ଅର୍ଥରେ ସାମି ପ୍ରବର୍ତ୍ତଇ ।

୫ । ସହ । ସମୀପ ଏ ଦୁଇ ଅର୍ଥରେ ଅମା ପ୍ରବର୍ତ୍ତଇ ।

୬ । ଜଳ । ମସ୍ତକ ଏ ଦୁଇ ଅର୍ଥରେ କ ପ୍ରବର୍ତ୍ତଇ ।

୭ । ଇବ । ଇତ୍ଥଂ ଏ ଦୁଇ ଅର୍ଥରେ ଏବ ପ୍ରବର୍ତ୍ତଇ ।

୮ । ତର୍କ । ଅର୍ଥନିଶ୍ଚୟ ଏ ଦୁଇଅର୍ଥରେ ନୂନଂ ପ୍ରବର୍ତ୍ତଇ ।

୯ । ମୌନାର୍ଥ । ସୁଖ ଏ ଦୁଇ ଅର୍ଥରେ ଜୋଷଂ ପ୍ରବର୍ତ୍ତଇ ।

୧୦ । ପଚ୍ଛିବା । ନିନ୍ଦା ଏ ଦୁଇଅର୍ଥରେ କିଂ ପ୍ରବର୍ତ୍ତଇ ।

୧୧ । ପ୍ରକାଶ୍ୟ । ସମ୍ଭାବ୍ୟ । କ୍ରୋଧ । ଉପଗମ । ନିନ୍ଦା ଏହି ଅର୍ଥମାନଙ୍କରେ ନାମ ପ୍ରବର୍ତ୍ତଇ

୧୨ । ଭୂଷଣ । ପର୍ଯ୍ୟାପ୍ତି । ଶକ୍ତି । ନିଷେଧ ଏହି ଅର୍ଥମାନଙ୍କରେ ଅଲଂ ପ୍ରବର୍ତ୍ତଇ ।

୧୩ । ବିତର୍କ । ପ୍ରଶ୍ନ ଏ ଦୁଇ ଅର୍ଥରେ ହୂଂ ପ୍ରବର୍ତ୍ତଇ ।

୧୪ । ନିକଟ । ମଧ୍ୟ ଏ ଦୁଇ ଅର୍ଥରେ ସମୟା ପ୍ରବର୍ତ୍ତଇ ।

୧୫ । ଅପ୍ରଥମ । ଭେଦ ଏ ଦୁଇ ଅର୍ଥରେ ପୁନଃ ପ୍ରବର୍ତ୍ତଇ ।

୧୬ । ନିଶ୍ଚୟ । ନିଷେଧ ଏ ଦୁଇ ଅର୍ଥରେ ନିଃ ପ୍ରବର୍ତ୍ତଇ ।

[୧] ସ୍ୟାତ୍ ପ୍ରବନ୍ଧେ ଚିରାତୀତେ ନିକଟାଗାମିକେ ପୁରା ।
[୨] ଊରର୍ଯ୍ୟୁରୀ ଚୋରରୀ ଚ ବିସ୍ତାରେଽଙ୍ଗୀକୃତୌ ତ୍ରୟଂ ।
[୩] ସ୍ୱର୍ଗେ ପରେ ଚ ଲୋକେ ସ୍ୱର୍ [୪] ବାର୍ତ୍ତାସମ୍ଭାବ୍ୟୟୋଃ କିଲ
[୫] ନିଷେଧବାକ୍ୟାଲଙ୍କାରଜିଜ୍ଞାସାନୁନୟେ ଖଲୁ ।
[୬] ସମୀପୋଭୟତଃ ଶୀଘ୍ର ସାକଲ୍ୟାଭିମୁଖେଽଭିତଃ ।
[୭] ନାମପ୍ରକାଶ୍ୟୟୋଃ ପ୍ରାଦୁ [୮] ର୍ମିଥୋଽନ୍ୟୋନ୍ୟଂ ରହସ୍ୟପି ।
[୯] ତିରୋଽନ୍ତର୍ଦ୍ଧୌ ତିର୍ଯ୍ୟଗର୍ଥେ [୧୦] ହା ବିଷାଦଶୁଗାର୍ତ୍ତିଷୁ ।
[୧୧] ଅହହେତ୍ୟଦ୍ଭୁତେ ଖେଦେ [୧୨] ହି ହେତାବବଧାରଣେ ।
[୧୩] ଚିରାୟ ଚିରରାତ୍ରାୟ ଚିରସ୍ୟାଦ୍ୟାଶ୍ଚିରାର୍ଥକାଃ ।
[୧୪] ମୁହୁଃ ପୁନଃ ପୁନଃ ଶଶ୍ୱଦଭୀକ୍ଷ୍ଣମସକୃତ୍ ସମାଃ ।
[୧୫] ସ୍ରାଗ୍ଝଟିତ୍ୟଞ୍ଜସାହ୍ନାୟ ସପଦି ଦ୍ରାଙ୍ମଙ୍କ୍ଷୁ ଚ ଦ୍ରୁତେ ।

---

୧ । ପ୍ରବନ୍ଧ । ଚିରକାଳାତୀତ । ନିକଟ । ଆଗାମି ଏତେ ଅର୍ଥମାନଙ୍କରେ ପୁରା ପ୍ରବର୍ତ୍ତେ
୨ । ବିସ୍ତାର ଅଙ୍ଗୀକାର ଏ ଦୁଇ ଅର୍ଥରେ ଊରରୀ ଉରୀ ଏ ତିନେ ପ୍ରବର୍ତ୍ତନ୍ତି ।
୩ । ସ୍ୱର୍ଗ । ପରଲୋକ ଏ ଦୁଇ ଅର୍ଥରେ ସ୍ୱର ପ୍ରବର୍ତ୍ତେ ।
୪ । ବାର୍ତ୍ତା । ସମ୍ଭାବ୍ୟ ଏ ଦୁଇ ଅର୍ଥରେ କିଲ ପ୍ରବର୍ତ୍ତେ ।
୫ । ନିଷେଧ । ବାକ୍ୟାଲଙ୍କାର । ଜିଜ୍ଞାସା । ଅନୁନୟ ଏତେ ଅର୍ଥମାନଙ୍କରେ ଖଲୁ ପ୍ରବର୍ତ୍ତେ
୬ । ସମୀପ । ଉଭୟତଃ । ଶୀଘ୍ର । ସାକଲ୍ୟ । ଅଭିମୁଖ ଏତେ ଅର୍ଥମାନଙ୍କରେ ଅଭିତସ୍
୭ । ନାମ । ପ୍ରକାଶ୍ୟ ଏ ଦୁଇ ଅର୍ଥରେ ପ୍ରାଦୁର୍ ପ୍ରବର୍ତ୍ତେ । [ ପ୍ରବର୍ତ୍ତେ ।
୮ । ଅନ୍ୟୋନ୍ୟ । (ପରସ୍ପର) ରହସି (ଗୋପନସ୍ଥଳ) ଏ ଦୁଇ ଅର୍ଥରେ ମିଥସ୍ ପ୍ରବର୍ତ୍ତେ
୯ । ଅନ୍ତର୍ଦ୍ଧାନ । ତିର୍ଯ୍ୟଗର୍ଥ ଏ ଦୁଇ ଅର୍ଥରେ ତିରସ୍ ପ୍ରବର୍ତ୍ତେ ।
୧୦ । ବିଷାଦ । ଶୋକ । ପୀଡ଼ା ଏତେ ଅର୍ଥମାନଙ୍କରେ ହା ପ୍ରବର୍ତ୍ତେ ।
୧୧ । ଅଦ୍ଭୁତ । ଖେଦ ଏ ଦୁଇ ଅର୍ଥରେ ଅହହ ପ୍ରବର୍ତ୍ତେ ।
୧୨ । ହେତୁ । ଅବଧାରଣ ଏ ଦୁଇ ଅର୍ଥରେ ହି ପ୍ରବର୍ତ୍ତେ । ( ଅର୍ଥରେ ଏମାନେ ପ୍ରବର୍ତ୍ତନ୍ତି
୧୩ । ଚିରାୟ । ଚିରରାତ୍ରାୟ । ଚିରସ୍ୟ ( ଚିରଂ ଚିରେଣ, ଚିରାତ୍ ଚିରେ ) ଚିରକାଳ
୧୪ । ମୁହୁର୍ । ପୁନଃପୁନର୍ । ଶଶ୍ୱତ୍ ଅଭୀକ୍ଷ୍ଣ । ଅସକୃତ୍ ବାରମ୍ବାର ଅର୍ଥରେ ଏମାନେ ପ୍ରବର୍ତ୍ତନ୍ତି
୧୫ । ସ୍ରାକ୍ । ଝଟିତି । ଅଞ୍ଜସା । ଅହ୍ନାୟ । ସପଦି । ଦ୍ରାକ୍ । ମଙ୍କ୍ଷୁ ଦ୍ରୁତ ଅର୍ଥରେ ଏମାନେ
( ପ୍ରବର୍ତ୍ତନ୍ତି ।

